# ଉତ୍ସର୍ଗ ।

ନିଖିଳ ଗୁଣନିଧାନ ବିଦ୍ୱଦ୍ଗ୍ରାହି-ପ୍ରବର ରାଜାବାହାଦୁର
ଯୁକ୍ତ ହିନ୍ଦୋଳାଧୀଶ୍ୱର ଶ୍ରୀ ନବକିଶୋରଚନ୍ଦ୍ର ସିଂହ ମର୍ଦ୍ଦ-
ଜ ଜଗଦ୍ଦେବ ଏମ୍, ଆର, ଏ, ଏସ, ଏଫ, ଆର, ଏସ,
, ମହୋଦୟଙ୍କ ... ... ...ଶ୍ରୀ କରକମଳେଷୁ ।

ଶ୍ରୀମନ୍ ମହାରାଜ !

ଆବାଲ୍ୟରୁ ଶ୍ରୀ ଛାମୁଙ୍କ ଆନୁକୂଲ୍ୟରେ ଲାଳିତ
ଂ ଶିକ୍ଷିତ ହୋଇ ଅଧୁନା ମଧ୍ୟ ଶ୍ରୀଛାମୁଙ୍କ ଆଶ୍ରାରେ ଜୀବନ-
କା ନିର୍ବାହ କରୁଅଛି, ଏହାର ପ୍ରତିଦାନ ମୋପରି ଦୀନ-
ର ପକ୍ଷେ ନିତାନ୍ତ ଦୁର୍ଲ୍ଲଭ, ତେଣୁ ଦରିଦ୍ର ଶିକ୍ଷିତ ବ୍ରାହ୍ମଣ
ସୁଲଭ ଏହି "ଅକ୍ଷତ" ପୁଞ୍ଜ ଅନ୍ତରର ଶୁଭାଶିଷସହ
ଣ କଲି । ଜଗଦୀଶ୍ୱର ଶ୍ରୀଛାମୁଙ୍କର ସର୍ବାଙ୍ଗୀନ ମଙ୍ଗଳ
କରନ୍ତୁ ଏହାହିଁ ଏକାନ୍ତ ପ୍ରାର୍ଥନା । ଇତି ।

ଶ୍ରୀ ଛାମୁଙ୍କର
ଏକାନ୍ତ ଶୁଭାନୁଧ୍ୟାୟୀ
ଶ୍ରୀ ଚକ୍ରଧର ଆଚାର୍ଯ୍ୟ
ନନ୍ଦପୁର ଶାସନ
ହିନ୍ଦୋଳ
୫-୧୨-୨୪

# ମନ୍ତବ୍ୟ ।

ଶ୍ରୀ ଶ୍ରୀ ରାଧା-ଗୋବିନ୍ଦ-ଦେବୌ ଜୟତଃ ।

କଲ୍ୟାଣୀୟ ଶ୍ରୀମାନ୍ ବାବୁ ଚକ୍ରଧର !

ତୁମ୍ଭର ବିରଚିତ କବିତାଗୁଡ଼ିକ ଆଗ୍ରହ ସହିତ
ଗୋଟିକର ଆମୂଳ ପାଠ ପୂର୍ବକ ଅତୀବ ପ୍ରୀତ ହେଲି ।
ବିଷୟଗୁଡ଼ିକ ସାରବାନ୍, ଭାବଗର୍ଭକ, ଉପଦେଶବ୍ୟଞ୍ଜକ
ପ୍ରସାଦଗୁଣବିଶିଷ୍ଟ ଅଟେ । ବିଶେଷତଃ ସେମାନଙ୍କ ଯଥା-
ର ଗୋଟିଏ ଗୋଟିଏ ଦୈଶିକ ଶବ୍ଦ ପ୍ରୟୋଗ କରାଯାଇ-
ତାହା ଆହୁରି ରମଣୀୟ ହୋଇଅଛି ।

ମୁଁ ଏହା ମୁକ୍ତ କଣ୍ଠରେ କହିପାରେ, ଏ କବିତାଗୁଡ଼ିକ
ହିରେ ନିଜଗୁଣ ଦ୍ୱାରା ସର୍ବଶ୍ରେଣୀୟ ପାଠକମାନଙ୍କର
କ ହେବ । ଇତି ।

ତୁମ୍ଭର ଏକାନ୍ତ ଶୁଭାନୁଧ୍ୟାୟୀ
ଶ୍ରୀ ରାମଚନ୍ଦ୍ର ନନ୍ଦ ଭକ୍ତିବିନୋଦ ।
କୁଞ୍ଜବିହାରୀପୁର ଶାସନ
ଢେଙ୍କାନାଳ
୨୫-୧୦-୨୪

ଅ କ୍ଷ ତ

# ସୂଚିପତ୍ର ।

# ଅଷାଢ଼ ।

କି ସୁଖର ଦିନ ପଡ଼େ ଆଜି ମନେ ।

କି ସୁଖର ଦିନ ପଡ଼େ ଆଜି ମନେ,
ସୁରି ଯା ଲୋତକ ଝରଇ ନୟନେ ।
ଥିଲା ଦିନ ଯେବେ ଜନନୀ ଚୁମ୍ବନ,
ଲଭେ ଅନୁକ୍ଷଣ, ଆଜି ତା ସ୍ୱପନ ।
କିଏ ଦେଲା ମୋତେ ସେ ଚୁମ୍ବ ଛଡ଼ାଇ,
ଜଗତର ଦୁଃଖ ଚୁମ୍ବନେ ଜଡ଼ାଇ ।
ମାତାସ୍ନେହ କ୍ରୋଡ଼- ନୀଡ଼ ଦୋଳେ ଦୋଳି
ସ୍ୱପନ ସଙ୍ଗୀତ ମନ ପ୍ରାଣ ଖୋଲି
ଗାଉଥିଲି କେତେ ଝଞ୍ଜାବାତ ସଙ୍ଗେ,
ଆଜି କାଳେ ମନ୍ଦ- ଅନିଳ-ତରଙ୍ଗେ ।
ଭୟ ହେଲେ ଝିଙ୍କି ଜନନୀ-ଅଞ୍ଚଳ,
ଲୁଗୁଉ ଥିଲି ମୁଁ, ବଦନ-କମଳ ।

## ଅକ୍ଷତ ।

କାଳି ପଣତ ତା    ଥିଲା ଲୌହ ବର୍ମ,
ଅଚ୍ଛେଦ୍ୟ ଅଭେଦ୍ୟ    ମୋ କୋମଳ ମର୍ମ ।
ଅଛି ସେ ଜନନୀ    ଅଛି ସେ ଅଞ୍ଚଳ,
ଲୋଡ଼େ ନା ମୁଁ ତେଣୁ    ଜୀବନ ଚଞ୍ଚଳ ।
ଫିଙ୍ଗିଛି ସେ ସାଞ୍ଜୁ    ଆପଣେ ଆପଣ,
ହୃଦୟେ ବାଜୁଛି    ଶତ ପ୍ରହରଣ ।
ମଧୁପ-ଚୁମ୍ବିତ    ସୁରଭି ସୁମନ,
ରଜନୀ-ରଞ୍ଜନ    ବିମଳ କିରଣ ।
ଦେଖିଥିଲି ପୂର୍ବେ    ଆଜ ମୁଁ ଦେଖୁଛି,
ଆକାଶ ପାତାଳ-    ପ୍ରଭେଦ ମଣୁଛି ।
ବସନ୍ତେ ବିହଙ୍ଗ    ମଧୁର କାକଳି
ତରଙ୍ଗିଣୀ-କଳ-    ସଙ୍ଗୀତ-ଲହରୀ
ଶୁଣିଥିଲି ପୁଣି    ଶୁଣୁଅଛି ଆଜ,
ମନତ ତେସନ    ତହିଁ ନୁହେ ରାଜ ।
ଜ୍ୟୋତ୍ସ୍ନା, ସୁମନ    ସମାନ ବିମଳ
ଚନ୍ଦନ-ଶୀତଳ    ସୁରଭି ସୁନ୍ଦର;
ନଦୀ ଜଳ ସ୍ୱଚ୍ଛ,    କଳ ବିମୋହନ
କୂଜନ-ମଧୁର,    ଫୁଲ୍ଲ ପକ୍ଷୀ ସମ
ଥିଲା ଏ ଅନ୍ତର,    ବୁଝୁଥିଲି ତେଣୁ
ବାଇ ସର୍ବେ ପ୍ରାଣ-    ବିମୋହନ ବେଣୁ

ଡ଼ାକୁଥିଲେ ମୋତେ ନିର୍ଜନେ ଗାଇବେ,
ହୃଦ ନାଚୁଥିଲା ଆନନ୍ଦ ବିଭବେ ।
ଆଜ ସେ ସରଳ ମଧୁର ଅନ୍ତର
ସମ୍ବାଦ ରଖିଛି ତୀବ୍ର ହଳାହଳ ;
ଯେଣେ ଗୃହେଁ ତେଣେ ସବୁ ଯାଏ ଜଳି
ବିଷ ବହ୍ନି ଉଠେ ହୃଦୟେ କନ୍ଦଳି ।



## କଥା-ଲଥା ।



କଥା ବୋଲେ-ଲଥା ସଖି କାହିଁକ ଗରବ ?
ମୋର ବିନା ନୁହେ ତୋର ଅସ୍ତିତ୍ୱ ସମ୍ଭବ ।
ଲଥା କହେ ମୋର ଯୋଗୁଁ ତୋହର ଗୌରବ
ମୁଁ ନ ଥିଲେ ତୁ ଜଗତେ ପାନ୍ତୁ ପରାଭବ ।
କବି କହେ କଳଗୋଳେ ନାହିଁ ପ୍ରୟୋଜନ
ସଖୀ ଦୁହେଁ ସାଥି ହୋଇ ତୋଷ ଜନମନ ।



# ମୁରଲୀ ।

ବାଜେ ମନ୍ଦେ ମନ୍ଦେ　　　କି ମଧୁର ଛନ୍ଦେ
　　ବଂଶୀ ଗୋପାଳ-ମୁରଲୀ,
ଡାକେ ତୋଳି ସ୍ୱର　　　ନଗ୍ରଇ ଅନ୍ତର
　　ପାଷାଣ ଯାଏ ତରଳି ।
ଶୁଣି ସେହି ସ୍ୱର　　　ଗଛରେ ପତର
　　ହୃଦୟ ନ ପାରେ ଧରି,
ମନ୍ଦ ସମୀରଣେ　　　ଦୋଳି ଘନଘନେ
　　ରଚେ ପ୍ରେମ-ଫୁଲ କଳି ।
କାନନେ ସୁମନ　　　ଶୁଣି ସେହି ସ୍ୱନ
　　ନାଚେ, ମନ ଉଚ୍ଚାଟନ;
ବୃନ୍ତପରେ ବସି　　　ସୁଖେ ହସି ହସି
　　ବାସ କରେ ବିତରଣ ।
ଫୁଲୁଁ ଫୁଲେ ଅଳି　　　ଗୁଞ୍ଜରି ଗୁଞ୍ଜରି
　　ଚୁମ୍ବେ ମନ ଆନନ୍ଦରେ,
ମଧୁପାନ ଛଳେ　　　ପ୍ରେମରସବଳେ
　　ପଡ଼ି ମୁରଲୀ-ଛନ୍ଦରେ ।

ଅକ୍ଷତ ।

ଶୁଣି ବଂଶୀସ୍ୱନ          ବନଦେବୀ ମନ
ଅନୁରାଗେ ଛନ ଛନ
ପୁଷ୍ପାଞ୍ଜଳି କରେ          ପୂଜେ ହୃଦୟରେ
ବଂଶୀଧାରୀ-ଶ୍ରୀଚରଣ ।

ବସି ଶୁକ ଶାରୀ          ପଢ଼ନ୍ତି ଉଚ୍ଚାରି
ମୁରଲୀ-ମହିମା ଗୀତ,
ବିହଙ୍ଗ ପଙ୍କତି          ପାଣି ଧରିଛନ୍ତି
ପ୍ରେମେ ଡ଼ୁବୁ ଡ଼ୁବୁ ଚିତ୍ତ ।

କୁରଙ୍ଗ କୁରଙ୍ଗୀ          କରି କେତେ ଭଙ୍ଗୀ
କୁଞ୍ଜେ କୁଞ୍ଜେ ବିହରନ୍ତି,
କହ କାହା ଆଶେ          ହୃଦୟ ଉଲ୍ଲାସେ
ଗ୍ରୀବା ଟେକି ଚାହିଁଛନ୍ତି ।

ତରଙ୍ଗିଣୀ ଧନୀ-          ପ୍ରାଣେ ସେହି ଧ୍ୱନି
ସାତ୍ତ୍ୱିକ ଭାବ ସଞ୍ଚାରି
ପ୍ରେମରେ ମତ୍ତାଏ          ହସାଏ କନ୍ଦାଏ
ତା ହୃଦ ନୁହେ ସମ୍ଭାଳି ।

ବେଗେ ଥରି ଥରି          ଧୀରେ ଢଳି ଢଳି
ଚାଲଇ ବାଧା ନ ମାନି
ସିନ୍ଧୁ ଭୁଜ ଦୋଳେ          ଦୋଳି ପ୍ରେମଭୋଳେ
ଫିଙ୍ଗେ ଲଜ୍ଜା ଭୟ ଗ୍ଳାନି ।

ପ୍ରଶାନ୍ତ ସାଗର ଅତି ଉତ୍ତରଳ
ପ୍ରାଣସଖୀ ସଙ୍ଗେ ବସି,
ଗୃହେଁ ଘରେ ବଉନ ଅଥବା ଗଗନେ
କେଉଁ ଦଗୁଁ ଶୁଭେ ବଂଶୀ ।

ଶୁଣି ସେ ମୁରଲୀ ଜ୍ୟୋତଷ୍କ ମଣ୍ଡଳୀ
କେନ୍ଦ୍ରରେ ରବକ ରଙ୍ଗୀ
ବେଢ଼ି ନାଚୁଛନ୍ତି ତାରା ପନ୍ତ ପନ୍ତ
ଚଉପାଶରେ ଦର୍ଶକୀ ।

ସ୍ୱନ ତାନ ମାନେ ବଦ୍ୟାଧରୀମାନେ
ଗାଆନ୍ତି ସୁଧା ସଙ୍ଗୀତ,
ଶୁଣେ ତାର ଶ୍ରୁତି ଯାର ଚିତ୍ତବୃତ୍ତି
ବିଶ୍ୱପ୍ରେମେ ଉଦ୍ଦୀପିତ ।



## ପାଠ-ଶାଠ ।

ଖାଲି ପାଠରେ କେବଳ ନ ଚଳେ ସଂସାର,
ପାଠ ସଙ୍ଗେ ସଙ୍ଗେ ଶାଠ ବଡ଼ ଦରକାର ।

ଶାଠ ପୁଣି ପାଠ ଛଡ଼ା ନୁହେ ପ୍ରୟୋଜନ
ପ୍ରତ୍ୟକ୍ଷ ପ୍ରମାଣ, ନୁହେ କପୋଳ ରଚନ ।
ପାଠ ଶାଠ ରଖେ ଯେହ୍ନୁ ଗଣ୍ଠି ମୁଠି କରି,
ସୁରୁଙ୍ଖୁ ଭୁ ଫସାରଛି ଯାଏ ତାର ବଳ ।



## ପ୍ରେମ ମିଳନ ।

ତରଙ୍ଗିଣୀ ଧାଏଁ ହସି ଅମ୍ବୁନିଧି ସଦନେ,
ପଙ୍କଜିନୀ ଧୀରେ ଗୃହେଁ ବସିଥାଏ ତପନେ,
ସ୍ୱଜନେ, କଇରବିଣୀ ମୁଦେ ଶଶଲାଞ୍ଛନେ;
କେତେ ଆଶା ହୃଦେ ପୋଷା ସୁଖ ପ୍ରେମ ମିଳନେ । ୧ ।

ଦରବିକଶିତ କଳି ଫୁଟେ ଅଳି ଚୁମ୍ବନେ,
ପ୍ରେମ-ଜୟ-ଗୀତ ଉଠେ ସାରା ବିଶ୍ୱଭୁବନେ, ।
ସ୍ୱଜନେ, ତାପସକୁଳ ବନେ ନିଦିଧ୍ୟାସନେ
ଯୋଗେ ରତ ଧବାଳନ୍ତି ଆତ୍ମାରାମ ମିଳନେ । ୨ ।



## ଆତ୍ମ ଚିନ୍ତା ।

ସଭ୍ୟ ସମିତି ରଙ୍ଗେଇ    ମୋର ଖ୍ୟାତିଗୀତି,
କେତେ ମୋ ଯଶକେତନ    ଉଡ଼େ ନିତି ନିତି,
ପୁଣି ବଜାଇ ନାଗରା
ଜଗତ ମେଲାଇ ଦିଏ    ମୋ ନାମ ପସରା । ୧ ।

ଅନ୍ତର ଧ୍ୱନିକୁ ଥରେ    ଡେରଲେ ଶ୍ରବଣ
ଶୁଣେ ମୁଁ ଝମକ ବାଜେ    ଘୋରେ ଘନଘନ,
ଜନ ନାଗରା ଦଦରା
ଭୁଲନା ଭୁଲନା ମୂଢ଼ !    ତୋ ଆତ୍ମ ଶୃଙ୍ଖଳା । ୨



## ଭାବନା ।

ଭାବନା, ତୁ ଦଗାଦିଆ    ଜାଣି ନ ଥିଲି,
ତୋର ଦଗାବାଜି କଥା    ଏବେ ବୁଝିଲି ।
ବରାଙ୍ଗନା ବାରାଙ୍ଗନା    ରୂପ-ମାଧୁରୀ
ଦେଖି, ପୁଣି ଶୁଣି ତାର    କଥା ଚାତୁରୀ

ଯୁବକ ଚପଳ ମନ- ଭୃଙ୍ଗ ଯେସନେ
ଲଖେ ମଧୁପାନ ଭ୍ରମେ ପ୍ରେମ-ସୁମନେ
ଫେରେ ଅଶାନ୍ତ ମାନସେ ଭକ୍ଷି ଗରଳ,
ନିଃସାର ସୁସାର ଅଙ୍ଗ ହୃଦ ଦୁର୍ବଳ;
ତୋ ମୋହନୀ-ମୂର୍ତ୍ତି ଦେଖି ମନ ତେସନ
ଲାଖିଗଲା ତୋହ୍ନ ପ୍ରେମ- ଫୁଲେ ବହନ,
ଲେଉଟି ଆସି ଦେଖୁଛି ନୁହେ ମୋହନ
ଜ୍ୱଳନ ପର ସେ ଘୃତ କରେ ଦହନ ।



## ଅନ୍ଧାରେ-ଆଲୋକ ।

ଉଆଁସ ରାତରେ ପଡ଼େ ମେଘ ଛିପି ଛିପି,
ଚାଲୁଛି ବାଟୋଇ ବାଟ ପାଦ ଚପି ଚପି ।
ଥରେ ଥରେ ମାରଦଏ ବିଜୁଳି ମଝିରେ
ସରପାଟି ଚାଲିଯାଏ ସେ ଢିପେ ଗହ୍ୱରେ ।
ଚାଲି ଚାଲି ଏହିପର ବାଟ ହୁଏ ଶେଷ,
ଘରପାଖ ହେଲେ ଆଜ ଚନ୍ଦ୍ରା କି ବିଶେଷ ?

ବାଟୋଇ ଗୁଲ୍ଲା, ବାଟ   କେ ନେବ କଢ଼ାଇ
ମୋର ଉଆଁସ ରାତରେ   ସେ ଗଲା ଶିଖାଇ ।



## ତୁଠ ପଥର ।

ତୁଠ ନିର୍ମଳ   ପାଣି ଗଙ୍ଗାଜଳ
ମୁଗୁନି ପଥର ପଡ଼ିଛି
ମସ୍ତକ ପତାଇ   ଲହରୀ ବାଳାର
କେତେ ପଦାଘାତ ସହୁଛି ।
ତାଳେ ତାଳେ ନାଚ   ଢଳଢଳ ବାଚ
ଗର୍ବେ ପୁଣି ପୁଣି ଧାଉଁଛି;
ମନେ ମନେ ହସି   ଶିରରେ ପଥର
ଫେନ-ପଦ-ରେଣୁ ଘେନୁଛି ।
ଯିଏ ଆସେ ତାର   ଚରଣ ଘର୍ଷଣ
ସହିବାକୁ ପିଠି ପାତଛି
ପରଲାଗି ଯେଣୁ   ଆତ୍ମସୁଖେ ବଳି
ଦେବାକୁ ସଦା ସେ ଶିଖିଛି ।

ସହୁଥାଇ ଯେତେ	କ୍ଳେଶ ଅବିରତେ
ତେତେ ସ୍ନିଗ୍ଧ ସେତ ଦିଶୁଛି ।
ପାଖେଇ ଆସିଲେ	ତା ଅନ୍ତିମକାଳ
ତାର ଧୈର୍ଯ୍ୟ ସେ କି ଛୁଟୁଛି ?
ନିଦାଘେ ପ୍ରଚଣ୍ଡ-	ମାର୍ତ୍ତଣ୍ଡ କିରଣ
ପଡ଼ି ଅଙ୍ଗ ତାର ଦହୁଛି
ଶ୍ରାବଣର ଧାର	ପଡ଼ି ନିରନ୍ତର
କେତେ କଷ୍ଟ ତାକୁ ଦେଉଛି ।
ମାଘ ମାସ ଶୀତ	ବଡ଼ ନିଦାରୁଣ
ଶିରାରେ ଶିରାରେ ଭେଦୁଛି,
କାହିଁକି ସେ ତଳେ	ଭ୍ରୂକ୍ଷେପ ନ କରି
ସହଳ-ମନ୍ତ୍ର ଜପୁଛି ।



## କୃଷକ ।

ଶ୍ରାବଣ ମାସର	ବୃଷ୍ଟିଧାର
ପଡ଼ିବାରୁ କ୍ଷେତ	ନୀରେ ଭର ।

ଶସ୍ୟେ ସୁଶ୍ୟାମଳା ଧଣେ ଧରା
କୃଷକର ମନ- ନେତ୍ର ହରା ।
ଝୁପୁ ଝୁପୁ ହିମଢୁଁ ଜଳ ପଡ଼େ,
ଗଗନରୁ କିବା ମୁକ୍ତା ଝଡ଼େ !
ସମୀରଣ ବହେ ମନ୍ଦ ମନ୍ଦ
ସଙ୍ଗେ ଆଣି ବନ- ମଲ୍ଲିଗନ୍ଧ ।
ଶୀତେ କମ୍ପେ ଦେହ ଥର ଥର
ବାଜଇ ଦାନ୍ତୁର ଦଶନର ।
ହୁତାଶନ ଅତି ସୁଖକର
ସୁଖୀ ବସି ସେବେ ନିରନ୍ତର ।
କିନ୍ତୁ ଏ ଦୁର୍ଦ୍ଦିନେ କୃଷକର
ହୃଦେ ଝରେ ମୁଦ ଝର ଝର ।
ତାଳପତ୍ର ଝାମ୍ପି ଶିରପରେ
ବହି, ସୁଖେ କ୍ଷେତ୍ରେ କାର୍ଯ୍ୟ କରେ,
ମଳିନ ବସନ ତା ଶରୀରେ
ରହିଅଛି ଜଡ଼ ତନ୍ତ୍ର ନୀରେ,
ପାଦଠାରୁ ତାର ଶିରଯାଏ
ପଙ୍କ-ବିନ୍ଦୁ-ଭଲ ଶୋଭା ପାଏ ।
ଉଇଁଲାରୁ ରବି ଅସ୍ତଗତ
ହେବାଯାଏ କୃଷୀ- ବଳ ରତ

ଥାଏ କାମେ, କ୍ଲାନ୍ତ    ନ ଜାଣଇ ;
ପାଣିପରି ଧନ    ଯାଏ ବହି ।
ମଧୁର ସରଳ    ତାଁର ପ୍ରାଣ
ନାହିଁ ଲେଶ ଗର୍ବ    ଅଭିମାନ !
ଧାନ କମଣ ତା    ଏକା ଲକ୍ଷ୍ୟ
କୁଚକ୍ରା ନ ଜାଣେ    ତା ହୃଦୟ
ବିଳାସେ ବ୍ୟସନେ    ନାହିଁ ମତି
କର୍ତ୍ତବ୍ୟ ସାଧନେ    ମତି ଗତି ।
ଆହା ରେ ମୋ ପ୍ରିୟ    କୃଷୀବଳ !
ସୁଖେ ଦୁଃଖେ ଧୀର    ତୋ ଅନ୍ତର ।
ତୋ ଗୀତ ସରଳ    ସୁଲଳିତ,
ସମୀର ହିଲ୍ଲୋଳେ    ଉଚ୍ଛ୍ୱସିତ
ମୋ ହୃଦୟ-ବୀଣା    ଛିଣ୍ଡା ତାରେ
ବାଜଇ ମଧୁରେ    କେଡ଼େ ତାରେ ।
ବିପଞ୍ଚୀ ବିତାନେ    ସୁଖକର
ଗାୟକ ଲଳିତ    କଣ୍ଠସ୍ୱର
ପଡ଼ିଅଛି ଶ୍ରୁତି-    ପଥେ କେତେ,
କିନ୍ତୁ ନ ଲଭିଛି    ସୁଖ ଏତେ ।
ମଧୁମାସ ହେଲେ    ଚୂତ ଶାଖେ
ପିକ ବସି କୁହୁ    କୁହୁ ଡାକେ;

ଶୁଣିଛ ସେ ସୁଧା- ମୟୂ ଗାନ,
ତୋ ଗୀତ ସଙ୍ଗେ କି ସେ ସମାନ ?
କାହିଁରେ ଶୀତଳ ନୁହେ ପ୍ରାଣ
ତୋ ଗାନକୁ ଡେର- ଥାଏ କାନ ।
ଭାବ ଅର୍ଥ ତହିଁ କିଛି ନାହିଁ ;
କେ ଜାଣି କାହିଁକି ହୁଏ ବାଇ
ଶୁଣିବାକୁ ତୋହ ମଧୁ ଗୀତ,
ତୋର ପ୍ରତି ଜାଗି- ଉଠେ ପ୍ରୀତି ।
ରେ ପ୍ରିୟ କୃଷକ ! ଦେଖି ଥରେ
ଶୁଣାଅ ତୋ ଗାନ ମଧୁ ସ୍ୱରେ,
ଶୁଣିବ ବାସନା ପୂର୍ଣ୍ଣ କର
ଗାଇବ ସଙ୍ଗୀତ ତୋର ପର ।



## କାମନା ।

ଜଗତ ତୁଳନେ କେଡ଼େ କ୍ଷୁଦ୍ର ମୁହିଁ
କେଡ଼େ ବଡ଼ ମୋର କାମନ
କ୍ଷୁଦ୍ର ଠାରୁ କ୍ଷୁଦ୍ର ହୋଇସିନା ମୁହିଁ
ଲୋଡ଼ୁଛି ଗଗନ ଚନ୍ଦ୍ରମା

ଆକାଶ-କୁସୁମ-ଚୟନେ ମୋ ମନ
ଚାଲୁଛି କେତେ କି ବିଫଳ ପ୍ରଯତ୍ନ
କି ଛାର କଥାରେ ମୁଗ୍ଧ ହୋଇଅଛି
ବୁଝାଇଲେ ମନ ଅମନା ।
ଦୈନ୍ୟ ସୁତା ଭିକ୍ଷା ଚିର ସହଚରୀ
କ୍ଷଣେ ଛାଡ଼େ ନା ମୋ ଅଗଣା
ମନେ ମନେ କଳ୍ପି ମନ ଅଟ୍ଟାଳିକା
ଗଢ଼ି ପୂରାଏ ମୁଁ ବାସନା,
ରାଜଅଧିରାଜ ସିଂହାସନେ ବସି
କେତେ କଥା ଚିନ୍ତେ ତହିଁ ମୁଁ ବିଳସି
ପଲକେ ପୁଣି ମୁଁ ତଳେ ପଡ଼େ ଖସି
କେତେ ସହୁଥାଇ ଲାଞ୍ଛନା ।
କି ମୋହିନୀ ଶକ୍ତି ଜାଣୁ ଲୋ କାମନା,
ଜଗତେ ନାହିଁ ତା ତୁଳନା
ଦୁଃଖ ତରୁମୂଳେ ଜଡ଼ାଇ ରଖିଲୁ
ଯେତେ ଛଡ଼ାଉଛି ଛାଡ଼େ ନା ।
ଦୁଃଖେ ଚିରଦିନ ରହି ଏ ଜୀବନ
ଯିବ କି ଭୋଳନାଥ ହୃଦୟ-ରତନ !
ଜଣାଏ ଚରଣେ ତୋହ ବିନୁ ଆନ
କାମନା ମୋ ପ୍ରାଣେ ଦିଅନା ।

# ମନ-ଦୁଃଖ ।

ମନ ଦୁଃଖ ମରେ ମନେ ମନେ,
କାନନ-ସୁମନ ଯେସନ୍ତେ ବନେ
ମୂଳେ ଗଢ଼େ ସଢ଼େ ଢେଙ୍କୁ ଝଡ଼
ଧୂଳି ସଙ୍ଗେ ମିଶେ ପଡ଼ି ପଡ଼ି,
ମନ ଦୁଃଖ ମରେ ମନେ ମନେ,
ବଂଶ କୀଟ ଯେସନ୍ତେ ବଂଶ ସନେ,
କାଟୁ କାଟୁ କୀଟ ବଂଶ ଗଲି
ବଂଶ ସଙ୍ଗେ ସଙ୍ଗେ କୀଟ ମଲି ।
ମନ ଦୁଃଖ ମରେ ମନେ ମନେ
ଯାର ଦୁଃଖ ଏକା ସେହି ଜାଣେ
କେ ନୁହେ କାହାର ଏ ଜଗତେ,
କା ଦୁଃଖ କେ ଭାବେ ହୃଦଗତେ ।
ମନ ଦୁଃଖ ମରେ ମନେ ମନେ
ଜାଣିବାକୁ ଅଛି ଏକା ଜଣେ !
ଡାକଲେ ଆସଇ ସେ ବମୁଖ,
ନୋହି, ଦୁଃଖ ନେଇ ଦଏ ସୁଖ ।

—()ঃ*ঃ()—

## ଚକି ।

ଯାକୁ ବୋଲୁ ଅଛ    ମୋର ମୋର,
ଯବେ ସେ ବୋଲେ ନା    ତୋର ତୋର,
ଯତ୍ନେ ବଳାଥିଲ    ସ୍ନେହ ଡୋର
ବାନ୍ଧିବାକୁ, ଭାଇ !    ପୋଥି ମୋର,
ଯବେ ଯାଇ ଦେଖେ    ତା କଡକ
ପୋକକଟା ପୋଥି    ଟିକ ଟିକ;
ପୋଥି ବନ୍ଧା-ଆଶା    ମଉଳିଲା,
ନୂଆ ଆଶା ପୁଣି    ବଉଳିଲା-
ଏ ରଜ୍ଜୁରେ ବାନ୍ଧ    ମୋର ଚକ
ଉଡ଼ାଇବ ନଭେ    ଯେହ୍ନେ ପକ୍ଷୀ
ଉଡ଼ ଉଡ଼ ଲୁଚେ    ଗଗନରେ
ଚକ ନଭିଯିବ    ଇଥରରେ ।



## ହସି—ଖୁସି ।

ହସି ହସି ଦିନ ଯାଏ,    ଯବେ ନୁହେଁ ଖୁସି
ହସିହସି ତୋଣ୍ଟ ଫାଟେ,    ହୃଦ କାଟେ ମୂଷି ।

ହାସ ମୁଖ ଦେଖାଇ ମୁଁ   ପରଙ୍କୁ ହସାଏ
ଏଣେ କଏ ପୁଣି ମୋର   ପରାଣ କନ୍ଦାଏ ।
ଧନ୍ୟ ରେ ସମାଜ ତୋତେ   ତୁ କମା ହସାଉ
ଚହ୍ନ୍ଟ ଚକ୍ଳୁଣ ମୁଖ, ( ହୃଦ )   ଜଳେ ଦାଉ ଦାଉ ।

---

# ଫୁଲ ।

—o—

ଫୁଲଟିଏ ଫୁଟି   ବହୁରୂପବନେ
ମନ୍ଦେ ମନ୍ଦେ ନାଚ   ସଞ୍ଜ ସମୀରଣେ
ଲାବଣ୍ୟ-ଲହରୀ-   ଦୋଳାରେ ଖେଳୁଛ
ବସି ବୃନ୍ତପରେ   ଲଜ୍ଜତେ ହସୁଛି,
ଧଣେ କି ମଞ୍ଜୁଳ   ଗୋଧୂଳି ରାଗରେ
ଝର ଝର ସଦା   ମାଧୁରୀ କି ଝରେ ?
ଥର ଥର କମ୍ପେ   ଡାଳରେ ପତର
କୁସୁମଟି ତହିଁ   ପୁଣି ଚଳ ଚଳ ।
କି ମନୋହାରଣୀ   ଶିରୀ ଅପରୂପ
ଦଳେ ଦଳେ ଶୋହେ,   ମାନସ-ମଧୁପ

ଲଖି ଯାଇ ତହିଁ          ସେ ଶୋଭା-ସଦନ
ଛାଡ଼ିବାକୁ କେବେ          ନ ବଳାଏ ମନ ।
ଦେଖିଲେ ନୟନ          ନ ଲଭେ ତୃପତି
ବଳୀ ହୋଇ ତହିଁ          ବାନ୍ଧଇ ବସତି
ଆସିବାକୁ ଫେର          ନ କରେ ଯତନ,
ଲାବଣ୍ୟର ଆହା!          କିବା ପ୍ରଲୋଭନ !
ବହି ଆଣେ ବାସ-          ସମୀର ମଳୟ,
ଆଘ୍ରାଣି ସୌରଭ          ନାସିକା ଅଥୟ
ଆମୋଦ-ଆକୁଳେ          ପଡ଼ଇ ଢଳୁସି;
ହୃଦ ପଦ୍ମକଳି          ଉଠଇ ବିକଶି ।
ପରାଗେ ରଞ୍ଜିତ          କୋମଳ କେଶର
ମରୁତ ପରଶେ          ନାଚେ ଥର ଥର,
ମକରନ୍ଦ ପଡ଼େ          ବିନ୍ଦୁ ବିନ୍ଦୁ ଝର
ଭ୍ରମର ଭ୍ରମଇ          ପିଅନ୍ତି ଗୁଞ୍ଜର ।
ଘଟାଏ ଜଗତେ          ବିଧି ନିବନ୍ଧନ
କି ବେଗରେ ପୁଣି          କି ପରିବର୍ତ୍ତନ
ଆଜି ଯେ ସୁମନ,          ଶୋଭାର ଆକର
ମଉଳ କାଲି ସେ          ଧୂଳିରେ ଧୂସର ।
ଫୁଲର ସମୟ          ହେଲାଣି ନିକଟ
ରହିବ ନାହିଁଟି          ଏ ଶୋଭା-ଚହଟ

ଉଭେଯିବ କ୍ଷଣେ ନିଯୁତ ଆଦର
ତପନ ଉଦୟେ କୁହେଳିକା ସର ।
ମାନବ ! କିଲାଗି ବୃଥା ଆଡ଼ମ୍ବରେ
ମାତିଅଛୁ ଏହି ମର ଜଗତରେ ?
ଝଞ୍ଝାବାତେ ଧନେ ତୋ ଲାବଣ୍ୟତନୁ-
ଲତା ଝାଉଁଳିବ ପାସୋରିଲୁଁ ମନୁଁ !
ଯୌବନ ସୁମନ ବୃନ୍ତୁ ପଡ଼ି ଝଡ଼ି
ଧୂଳି ସଙ୍ଗେ ମିଶି ଯିବ ପଚି ସଡ଼ି ;
ରହିଥିବ ତୋର ସୁନାମ ସୌରଭ;
ବୁଝି କାର୍ଯ୍ୟ କର ଛାଡ଼ ତୋ ଗରବ ।



## ନଦୀ ।

ଲହରୀମାଳିନୀ ଦୂର ପ୍ରବାହିନୀ
ନଦୀ ଗିରି ପଦୁଁ ଝରି
ଯାଏଁ ତରତର ନାଚି ଢଳଢଳ
ସାଗର ପ୍ରେମ ସୁମରି ।
ଯେତେ ଆଗେ ଯାଏ ତେତେ ବଢ଼ୁଥାଏ
ଦ୍ୱିଗୁଣ ତାର ସାହସ

ଲଙ୍ଘି ଅବିରାମ    କଠିନ ପାଷାଣ
ବହେ ହୋଇ ହସ ହସ ।
ସାଗର ତା ଧ୍ୟାନ,    ସାଗର ତା ପ୍ରାଣ
ସାଗର ଜୀବନ ଧନ ;
ସାଗର ସୁଖ୍ୟାତି    ରଟେ ଦିବାରାତି
କରି କଳକଳ ସ୍ୱନ ।
ନିକଟେ ଯେତେ ସେ    ହୁଏ ଅବଶେଷେ
ତେତେ ତା ହୃଦ ବିସ୍ତାର
ବଢ଼େ, ସୁମୋହନ-    ମୂର୍ତ୍ତି ଅନୁକ୍ଷଣ
ଦିଶେ ଗମ୍ଭୀର ଉଦାର ।
ପାରାବାର ସଙ୍ଗେ    ମିଶି ତା ଉତ୍ସଙ୍ଗେ
ଭୁଞ୍ଜେ ଚିର ସୁଖ ଶାନ୍ତି
କଳନ୍ନାଦିନୀ    ତରଙ୍ଗିଣୀ ଧନୀ
ପ୍ରେମାଳାପେ ସଦା ମାତି ।
ସାଧୁର ଜୀବନ-    ସ୍ରୋତତ ଏସନ
ସରଜ ପ୍ରେମ- କଲ୍ଲୋଳ
ପ୍ରେମେ ବଳୀୟାର    ହୋଇ ଅନିବାର
ଲୋଡ଼େ କୃପାସିନ୍ଧୁ କୋଳ ।



## ନାଉରୀ ଭାଇ ।

ଝୁପୁଝୁପୁ ପଡ଼େ ବରଷାର ବାରି
ଝୁରୁଝୁରୁ ବହେ ବାଆ ;
କାହିଁ ଯାଉଛୁ ରେ ନାଉରିଆ ଭାଇ !
ତରତର ବାହି ନାଆ ?
ଦୁଇକୂଳ ଖାଇ ବଢ଼ିଛି ନଈ
ଦେଖିଲେ ମାଡ଼ଇ ଡର,
ଦୁରୁଦୁରୁ କମ୍ପେ ମୋହର ଅନ୍ତର,
ତୋ ଛାତି ଏଡ଼େ ପଥର !
ରଙ୍ଗେ ଖେଳି ଖେଳି ଦୋହଲି ଦୋହଲି
ଧାଇଁ ଆସୁଛି ଲହରୀ
ବନ୍ୟାର ବଦନ ଉଗାରଣ ଫେନ
ଗ୍ରାସିବାକୁ ପରା ତରୀ !
ନାହିଁ ତିଳେ ଭୀତି କି ସାହସଭରେ
ଚାଲିଛୁ ନାଉରି ଭାଇ !
ମନଆନନ୍ଦରେ ସୁଲଳିତ ସ୍ୱରେ
ମଧୁର ସଙ୍ଗୀତ ଗାଇ ।
ସଂସାର-ସରିତ ବହୁଛି ଆଗରେ
ସଦା ଦୁଇକୂଳ ଖାଇ,

ତୋପର ଦନେ କି  ପାଇହେବ ଦମ୍ଭେ
  ବଭୁନାମ ସୁଖେ ଗାଇ ?



## ଶାନ୍ତି ।

ଖୋଜଲଣି କେତେ  କେତେ ବା ଖୋଜିବ ?
  ଦେହେ ନାହିଁ ଆଉ ବଳ;
ବୁଲି ବୁଲି ପାଦୁଁ  ପାଣି ମୋ ମଲାଣି
  ଶୁଖିଲାଣି ହୃଦ-ସର ।
ଦେଖିଲି ସୁମେରୁ  ପୁଣି ତ କୁମେରୁ
  ପଶିଲି ଜଳଧିତଳେ,
ଦେଖିଲି ଗଗନେ,  ଗମିଲି ନନ୍ଦନେ
  କାହିଁ ନ ଦେଖିଲି ଥରେ ।
ଭ୍ରମିଲେ କି ହେବ,  କିଏ କାହିଁ ଦେବ ?
  ଅଛି ପାଖେ ମୋ ରତନ,
ଗଳାମାଳ ଗଳେ  ପଡ଼ିନାହିଁ ତଳେ
  ଖୋଜେ କପାଁ ତ୍ରିଭୁବନ ?



## ଧନ-ମାନ ।

ମାନ ଯାଉ ବୋଲେ ଲୋଭୀ    ରହୁ ମୋର ଧନ,
କହେ ମାନୀ ଯାଉ ପଛେ    ମୋ ଧନ ଜୀବନ
ଥାଉ ମାନ, ଗଲେ ସେତ    ଆଉ ନ ଫେରିବ,
ଧନ ଗଲେ ପ୍ରାଣ ଥିଲେ    ଅନେକ ମିଳିବ;
ଲୋଭୀ ଭଣେ ଫମ୍ପାମାନେ    କିସ ପ୍ରୟୋଜନ ?
ଧନ ଗଲେ ଗଲା ସିନା    ଜୀବନ କାରଣ ।



## ଦିଅ-ନିଅ ।

ଦିଅ ନିଅ ଲାଗିଅଛି    ନିଖିଳ ସଂସାରେ,
ଦେଇ ନେବା କଥା ଭଲ    ମହତ ବେଭାରେ ।
ନ ଦେଇ ନେବା ଲୋଡ଼ିଲେ    କାହୁଁ ବା ମିଳିବ ?
ମହତ ଜନକୁ ସେ କି    ସୁନ୍ଦର ଦିଶିବ ?
"ଦିଅ, ଭାଇ ! ନିଅ" ଏହା    ସୁଜନ-ସୁରୀତି
ନ ରୁଣି କାଢିବା ବାଞ୍ଛା    ଅସଙ୍ଗତ ନୀତି ।



## ଉଷାଗମେ କୃଷକ ।

ଉଷା କାଳେ ପ୍ରାଚୀ କୋଳେ ତରୁଣ ତପନ
ଖେଳଇ ଆନନ୍ଦେ, ମୁଖ ଅରୁଣ ବରଣ ।
ଲଭି ତା ଶୀତଳ କର ଲଭି ତା ମାଧୁରୀ
ନବ ଜାଗରଣେ ଫୁଲେ ହୃଦୟ ସବୁରି ।
ନାହିଁ ସେହି ଅବସାଦ ନାହିଁ ସେ ଜଡ଼ତା
ଅନ୍ତର-ବାଇଜେ ବାଜେ ସଖୀ ପ୍ରଫୁଲ୍ଲତା ।
ଖେଳଇ ଜୀବନ-ସ୍ରୋତେ ଉତ୍ସାହର ଢେଉ
ଲାଗିଲେଣି ସର୍ବେ କାର୍ଯ୍ୟେ ବସି ନାହିଁ କେହୁ ।
ସରଳ କୃଷକ ଅଙ୍ଗେ ଖଣ୍ଡେ ମୋଟା ଖଦ-
ଶିରେ ଝାମ୍ପି ଦେଇ, କାନ୍ଧେ ଲଙ୍ଗଳକୁ ଲଦ,
ବଳଦ ଧଉଁଛି ତାର ଯୁଆଳରେ ଛନ୍ଦ,
ପାଞ୍ଚଣ ହାତରେ ଯାଏ ବିଭୁପଦ ବନ୍ଦ ।
ହୃଦୟ ଆନନ୍ଦଭରା ପଡ଼ୁଛି ଉଛୁଳି
ଫିଟି ପଡ଼ୁଅଛି ସୁଖ- ସଙ୍ଗୀତ-କୁଥୁଳି ।
ଶିଖି ନାହିଁ ଜୀବନରେ ନକଡ ଓଜନ
ଚଳେ କେଉଁଦିଗେ କଣ୍ଣା ନାହିଁତ ସ୍ମରଣ,
ଆନନ୍ଦ ନଶାରେ ଭ୍ରମେ ଆନନ୍ଦ-ବଜାରେ
ଆନନ୍ଦ ସଉଦା କିଣି ମନର-ମଜାରେ ।

# ଭଦାଳିଆ ।

ଦେଖ ଶାଖୋଟକ ଶାଖାରୁ ଭଦାଳିଆ ପକ୍ଷୀଟି
ଉଡ଼ି ଯାଉଅଛି ମେଲାଇ କି ବିଚିତ୍ର ଶାଟୀଟି,
ଥରେ ଊର୍ଦ୍ଧ୍ୱେ ଥରେ ତଳକୁ ଥରେ ତେର୍ଛା ରଭସେ
ତରୁଣ-ଅରୁଣ-କିରଣେ ଖେଳେ ପକ୍ଷୀ ହରଷେ
ଝଲସି ଉଠୁଛି ବିହଙ୍ଗ ଅଙ୍ଗ-ନୀଳ ବରନ
ଦେଖିଲା ଜନର ମାନସେ ଜନମାଇ ଚେତନ ।
ଭବ ଦେଖି ଥରେ, ମାନବ ! ତୋର କେଡ଼େ ଗରବ
ଦେଖାଇ ତୋ କର-ରଚନା କାରିଗର ପାଟବ ।
କେତେ ହାତୀ ଘୋଡ଼ା ବିହଙ୍ଗ କେତେ ତରୁ ଲତିକା
ନାନାବିଧ ରଙ୍ଗେ ରଞ୍ଜାଇ ରଚିଛି ତୋ ତୂଳିକା
କେତେ ଦେବ ଦେବୀ ମହାତ୍ମା- ଜନ-ଚିତ୍ର-ପଟ୍ଟିକା-
ଅଙ୍କନେ ତୋ କର କୁଶଳ ଖ୍ୟାତି ରଟେ ପତ୍ରିକା
ଏଡ଼େ ଚାରୁ ନିତ୍ୟ ନୂତନ ମୂର୍ତ୍ତିମନ୍ତ ମାଧୁରୀ
ଫୁଟାଇଁ ପାରେ କି, ମାନବ, ତୋ ରଚନା-ଚାତୁରୀ
ଛାଡ଼ିଦିଅ ଏବେ ହୃଦୟୁଁ ଚିରପୋଷା ଗୁମାନ,
ତୋ ଚାତୁରୀ କେବେ ହେବ କି ପ୍ରକୃତିର ସମାନ ।



## ପାଣି ଯମୁନା ।

ସରସୀ ଚଞ୍ଚଳ ସଲିଳେ
　　　ନାଚେ ପଦ୍ମ ଫୁଲଟି,
ପାଣି ଯମୁନା ମୋ ନାଚୁଛି
　　　ସମୀରରେ ଚହଟି ।
ଶ୍ୱେତ ରକ୍ତ ପୀତେ ଛନ୍ଦିତ
　　　ନୀଳ ପକ୍ଷ ଦୁଇଟି,
କେଡ଼େ ସୁଶୋଭନ ଦେଖି ନ-
　　　ପଡ଼େ ନୈନପଟଟି ।
ଦେଖାଇ ତଳକୁ ଯମୁନା
　　　ସରୁ ଲମ୍ବ ଚଞ୍ଚୁଟି
କହୁଛି ରାଜୀବ ଦେଖ ରେ
　　　ମୋର ଚନ୍ଦ ତନୁଟି ।
ଧୀର ସମୀରଣେ ଆନ୍ଦୋଳ
　　　ଭରକେନ୍ଦ୍ର ସମ୍ଭାଳି
ରହିଛି ଗଗନେ ବିହଙ୍ଗ
　　　ନିମ୍ନେ ଦୃଷ୍ଟି ତାହାର ।
ଶଫରୀ ଚଳନ ସଙ୍କେତ
　　　ସ୍ଥିର ଜଳ ଉପରେ

ପଡ଼ିଗଲେ ଅରେ ଭାଗ୍ୟକୁ
ପକ୍ଷୀ ଦୃଷ୍ଟିପଥରେ ।
ଚାଲିମାରି ନେବ ଯମୁନା
ଦେଖୁଁ ଦେଖୁଁ ପଲକେ,
ଖସିବାକୁ ଚକ୍ଷୁମୂଳରୁ
ତାକୁ ଆଜ ଦେଲା କେ ।
ଲକ୍ଷ ଶିଖିବାକୁ, ମାନବ,
ଖୋଜୁଛୁ କି ନମୁନା
ଦେଖ ଦେଖ ତୋର ଆଗରେ
ନାଚୁଛି ମୋ ଯମୁନା ।



## ପୁଳିନ୍ଦ କୁମାରୀ ।

ଢଳ ଢଳ ନିଶାକର ତୁଷାର ଧବଳ,
ପ୍ରଶାନ୍ତ ଗମ୍ଭୀର ନୀଳ ଗଗନ ମଣ୍ଡଳ ।
ସୁନ୍ଦରୀ ଯାମିନୀ ଶାନ୍ତି- ମୋହନ ମନ୍ତ୍ରର
ଉତ୍ସବରେ ନୀରବେ, ସର୍ବେ ସୁଶାନ୍ତ ଅନ୍ତର ।
ଚୂତ କାନନରେ ମୋର ପୁଳିନ୍ଦ କୁମାରୀ
ବସିଛି ଆନନ୍ଦ ମନେ ହୃଦେ କି ବିଗ୍ରହ ।

ଧନମଣି କର-ମ୍ଳାନ    କୁମୁଦ କଳକା
ବକଶି ଉଠୁଛି କବା    ପରଶି ଚନ୍ଦ୍ରକା !
ଶବର-ପିଞ୍ଜର-ମୁକ୍ତ    ସାରିକା ନାୟିକା
ରହିଛି କି କାନ୍ତ ଆଶେ,    ତା ପ୍ରେମ ପ୍ରେମିକା ।

(୨)

ଜନକ ଜନମାସ୍ଥନା    ସରଳା ବାଳକା
ଦରିଦ୍ରତା-କୀଟ-କଷ୍ଟା-    କୁସୁମ-କଳକା,
ଭ୍ରମୁ ଭ୍ରମୁ ଧନେ ଧାନ-    ବେଶରେ ମାର୍ଗରେ
ପଡ଼ିଲା ବୃଦ୍ଧ ପୁଲନ୍ଦ    ନୟନ-ପଥରେ,
ନେଲା ଘରେ ବାଳକା ସେ    ଦେଖି ତା ମାଧୁରୀ
ସୁତ-ଗଳାହାର ଭାବେ    ସରଳା ଚତୁରୀ ।
ଛାଇତଳେ ବଢ଼ି ପୁଣି    ଯତନେ ଲାଳିତା
ଯୌବନେ ଚହଟି ଉଠି    ହେଲା ସେ ଲଳିତା ।
କାମୁକ ଏ ରୂପ ଦେଖି    ଶ୍ବର ପୁଲନ୍ଦ,
ଫୁଟିଲା ଫୁଲେ ଲାଗିଲା    ତା ମନ ମିଳନ୍ଦ ।
କୁମାର-ହୃଦୟ-କୁଞ୍ଜେ    ତା ପ୍ରେମ ସାରିକା
ଛାଡ଼ିଛି କୁମାରୀ ଆନେ    ନୁହେ ସେ ରସିକା ।
ସରଗ ଅପ୍ସରୀ ଝୁର    ପିଶାଚ କବଳୁ
ମୁକତ ଲଭିବା ଆଶେ    କାନ୍ତ ସଙ୍କେତରୁ
:

ବସିଛି କାନନେ ଆଜ — ପ୍ରଫୁଲ୍ଲ ଅନ୍ତରେ;
ଉଡ଼ିବ ପକ୍ଷିଣୀ ପକ୍ଷୀ- — ସହ ଦେଶାନ୍ତରେ ।

## କେତକୀ ।

କଣ୍ଟକ ଆସନେ ବସି — କେତକୀ ମୋ ହସି ହ
ଢାଳଇ ଜଗତ ସାରା — ସୌରଭ ଧାରା ଯେ ।
ଶୁଭ୍ର ତନୁ ଢଳ ଢଳ — ଦିଶେ କିବା ମନୋହର
ଜିଣି ଜାମ୍ବୁନଦ କାନ୍ତି — ଦିଶେ ତା ଭିତ ଯେ ।
ସୁଧା ବୋଲା ମୁଖ ଖଣ୍ଡି — ଦେଇଛି କେଶରେ ମ
କେତକୀ ଗୃରୁ ହାସିନୀ — ହୃଦ-ଆହ୍ଲାଦିନୀ ଯେ ।
କହୁନାହିଁ ପଦେ କଥା — ତଥାପି ମୋ ହୃଦବ୍ୟ
ବୁଝେ ତା ଭାବ ଅନ୍ତରେ — ଯେଣୁ ସଙ୍ଗରେ ଯେ
ଦୂରେ ଥାଇ ସେ ରହଟେ — ପାଶେ ବାସ ନ ପ୍ରକା
ଏ ବଧୂ ସିନା ବଧିର — ବୁଝେ ସୁଧୀର ଯେ ।
ନାହିଁ ଭେଦାଭେଦ ତଳେ, — ଯିଏ ଆସି ପାଖେ ମି
ସ୍ନେହେ ତାକୁ କୋଳେ ଧରେ — ସର୍ପେ ଭ୍ରମରେ ଯେ ।
ନାହିଁ ଭୀତି ହୃଦୟରେ — ତେଣୁ ସିନା ଆଷାଢ଼ରେ
ଶୁଣି ଘନ ଗରଜନ — ଏତେ ପ୍ରସନ୍ନ ଯେ ।

ଭୃଙ୍ଗ କି ସାଧୁ ଅନ୍ତର    କେତକୀ-ଗୁପ୍ତ-ମନ୍ତର
ଲଭି ତା ମହତ୍ତ୍ୱ ଦୀକ୍ଷା    ଦିଅଇ ଶିକ୍ଷା ଯେ ।

## କୁମୁଦିନୀ ।

ଅବଲମ୍ବି ଅସ୍ତାଚଳ    ବାସର-ରଞ୍ଜନ
ଲୋହିତ କିରଣେ ରଞ୍ଜି    ବାରୁଣୀ ଗଗନ
ଲଭନ୍ତି ପରାଣ ପ୍ରିୟା-    ଅଧର ଚୁମ୍ବନ,
ଚଟିଛନ୍ତି ଫଗୁଖେଳ    ଦିଗଙ୍ଗନାଗଣ ।
ଘଷ୍ଟଣେ ଭାଲରେ ଦେଇ    ରାକା-ଶଶି-ଟିକା
ଶ୍ରାନ୍ତ ସଖୀ ସଙ୍ଗେ ବଢେ    ରଜନୀ-ନାୟିକା ।
ହିମକର-ବୀଚ ମୁଞ୍ଚେ    ଶୁଭ୍ରନୀ ଯାମିନୀ,
ବିଳାସୀ କୋଳେ ଦୋଳଇ    ସୁଖେ ବିଳାସିନୀ ।
ଏ ସୁଖ ସମୟେ କାହିଁ    ସରସୀବାସିନୀ
ଦିବସ ବିରହ ଅନ୍ତେ    ନୂଆ ରସିକିନୀ
ହେରି ନିଜ ପ୍ରାଣବନ୍ଧୁ    ଦେବ ନିଶାକର
ଅନୁରାଗଭରେ ନାଚେ,    ହୃଦୟ ଚଞ୍ଚଳ;
ଗୃହିଁଣ ପ୍ରାଣରମଣେ    ସହାସ ନୟନେ
ରମ୍ଭଇ ସଲଳ ବ୍ରୀଡ଼ା-    ବିନମ୍ର ବଦନେ ।

ପ୍ରେମ-ନଶା ଜୋରେ ହୃଦ ନ ପଡ଼େ ସମ୍ଭାଳ,
ପାଗଳନୀ ପରି ନାଚେ ଅତି ଉଚ୍ଛୁଳ ।
ଇଙ୍ଗିତେ ପ୍ରକାଶି କେତେ ବିଚ୍ଛେଦ କାହାଣୀ
ଆଡ଼ରୁଷା ହୋଇ ବସେ ସହଜେ ମାନିନୀ ।
ଭଷି ଗୃହୁଁ ସୁଧାକରେ କର ଆଲିଙ୍ଗନ
ବୋଧନ୍ତି ପ୍ରିୟା ମାନସ ରଜନୀରଞ୍ଜନ ।
କୁମୁଦନୀ ନୟନରୁ ଶିଶିରାଶ୍ରୁ ପଡ଼େ
ମାନିନୀ-ହୃଦୟୁଁ ମାନ- ମୁକୁତା କି ଝଡ଼େ
ପ୍ରାକୃତ ପ୍ରେମେ ଆଗେ କି ରହେ ଅଭିମାନ ?
ଖରରଶ୍ମେ ତୃଣ କାହିଁ ନୁହେ ଭାସମାନ ?
ତେଜି ମାନ କୈରବଣୀ ପୀରତିବହଳା
କାନ୍ତ-ଆଲିଙ୍ଗନେ ଖୋଲି ପ୍ରମୋଦ ପସରା
ଖେଳି ଦୋଳି ହସି ନାଚି କାଟିଦିଏ ରାତି,
ଉଇଁଲଣି ନଭେ ଏବେ ତାରକା ପ୍ରଭାତି
ହିମକର କୁମୁଦନୀ- ବିରହ ଦୂତିକା
ପ୍ରେମିକ ପ୍ରେମିକା ମୁଖ ପଡ଼ିଗଲା ଫିକା ।
ବିହଙ୍ଗ ନୟନେ ଦୁହେଁ ରୋଦିଲେ ବହୁତ,
ଆଶ୍ୱାସଇ ଉଭେ କେତେ ମଧୁର-ମରୁତ ।
ସରୋଜନୀ ବନ୍ଧୁ ଦର୍ଶ- ପ୍ରେମରୂପେ ପଡ଼ି
ମଧୁକର ପଦ୍ମ ପଦ୍ମେ ଯାଉଅଛି ଉଡ଼ି ।

ବାନ୍ଧବ ବିଚ୍ଛେଦ କରି　　ଭିନ୍ନ ଭିନ୍ନ ମନେ
ସଲିଳେ ପଡ଼ିଲା ତୃଣ　　ନିଜ ବୃନ୍ତ ସନେ ।
ରାଜତ୍ୱ କରଇ ବସି　　ସଂସାରେ ନିୟତି
କରେ ଦୁଃଖେ ସୁଖେ ସୁଖ　　ଦୁଃଖେ ପରିଣତି ।
ଚକ୍ରୀ ଚକ୍ର ପ୍ରାପ୍ତେ ସିନା　　ନର ଜଗତରେ
ମାନବର ଭାଗ୍ୟଚକ୍ର　　ଫେରେ ନିରନ୍ତରେ ।



## ଆଶା ।

ପରାଣସଙ୍ଗିନ ଆଶା,　　କାହିଁକି ଏ ଛଳନା ?
ଲଳିତ ମୋହନ ବେଶେ　　ଆଉ ଦେଖା ଦିଅ ନା,
ସଜନି, କ୍ୱଣିତ ଭୂଷା　　ଚରଣରେ ଝଙ୍କ ନା
ଖଞ୍ଜନ-ଖଞ୍ଜନନେତ୍ରେ　　ଭିନ୍ନାଞ୍ଜନ ରଞ୍ଜ ନା ।
ନନ୍ଦନର ପାରିଜାତମାଳା　　ଗଳେ ପିନ୍ଧ ନା
ପୋଛିଦିଅ ଭାଲପଟୁଁ　　ଗୋରଚନା-ରଚନା
ସଜନି, ମଧୁରାଧରେ　　ଦରସ୍ମିତେ ହସ ନା
ଦରମର ପ୍ରଣୟୀକୁ　　ତୀ କଟାକ୍ଷ ହାଣ ନା ।
ବିଦ୍ୟାଧରୀ ବେଶେ ତୋତେ　　ଦେଖିବି ନା ନୟନେ
କଲିଣି ଏ ପଣ, ସଖି,　　ଥରେ ହେଲେ ଜୀବନେ

ସଜନ, କାଳିମା ରେଖା କମ୍ପା ପଡ଼େ ବଦନେ ?
ସତେକି ଛାଡ଼ିବ ତୋତେ ମୋ ଜୀବନେ ମରଣେ ।
ଫିଙ୍ଗିଦିଅ ଅଙ୍ଗୁ ବେଶ- ଭୂଷା ପାଟ ପତନୀ
କଷାୟ ବସନ ପିନ୍ଧ କଣ୍ଠେ ମୁଞ୍ଜ ବେଷ୍ଟନୀ
ସଜନ, ତୁଳସୀମାଳା ସଙ୍ଗେ ନାମକରଣୀ
ଭସ୍ମ ବିଲେପନ ଦେଇ ସାଜ ବରବରନ !
ଋଷିକନ୍ୟା ରୂପେ ଦେଖୁ- ଥିବ ଦିନଯାମିନୀ
ଉଟଜେ ଆଙ୍କିବ ଶାନ୍ତ ମୁକ୍ତି ଦେହଧାରିଣୀ ;
ସଜନ, ନଶ୍ୱର ପ୍ରାଣେ ହେବୁ ଆଶାଦାୟିନୀ
ତୋ କ୍ଷେପଣି ଧରି ଠେଲି ଦେବ ମୋର ତରଣି ।



## ଆବାହନ ।

ଆସ ଆସ ସଖା ନ ହୁଅ ବିମନା,
କେହି ନ ପଚାରୁ କାହିଁକି ଶୋଚନା ?
ମୋ ଶରୀର କକ୍ଷ ଫିଟାଇ ଦେଇଛି,
ପ୍ରେମ ଆଲିଙ୍ଗନେ ବାହୁ ପ୍ରସାରିଛି,
ଆସନ ସଜାଣେ ପାତିଛି ହୃଦୟ
ବସ ବନ୍ଧୁ ସୁଖେ ନ ହୁଅ ଅଥୟ ।

ଆବାଲ୍ୟରୁ ତୁମ୍ଭେ　　ଚିର ସହଚର
ଦୁଃଖ ସୁଖ ବନ୍ଧୁ　　ଜୀବନ ସୋଦର ।
ଜୀବନେ ଦେଖିଲି　　କେତେ କେତେ ସଖା
ନିକଷେ କଷିଲି　　ସମସ୍ତେ ତ ଚଖା ।
ଆସନ୍ତି ସରବେ　　ବୁଝି ଯେଝା ବେଳ
ଲଗାନ୍ତି ଚହଟେ　　କେତେ ପ୍ରେମଖେଳ,
ପୂରିଲେ କାମନା　　ଖେଳ ଯାଏ ଭାଙ୍ଗି
ଦେଖା ନ ମିଳଇ　　ମୁହୂର୍ତ୍ତିକ ଲାଗି ।
ତୁମ୍ଭପରି ବନ୍ଧୁ　　ଦେଖିନାହିଁ ଜଣେ
ଚିରସାଥୀ ହେଲ　　ସଂସାର ଗହନେ ।
ରକ୍ତ ମେଦ ମାଂସ　　ତବ ସୁଖାସନ
ସାରିଛି ଆଗରୁ,　　ମୋ ଅସ୍ଥି ଚରମ
ରଖିଛି କେବଳ　　ସମାଧି ଯତନେ
ଭୁଞ୍ଜ ସଖା କିଛି　　ନ ବଗୁରି ମନେ ।
ପ୍ରେମ ସମ୍ଭାଷଣ　　ବହୁତ ହେଲଣି
ମନ ବହୁନାହିଁ　　ଦେବାକୁ ମେଲଣି
ବସିଥାଅ ବନ୍ଧୁ　　ହୃଦୟ ପଞ୍ଜରେ
ହସି ଖେଳ ପ୍ରାଣ—　　ବିହଙ୍ଗ ସଙ୍ଗରେ
ତୁମ୍ଭ ମହାଶିକ୍ଷା　　କରି ଗଣ୍ଠିଧନ
ବାନ୍ଧିଥିବି ସଦା　　ଅଞ୍ଚଳେ ଯତନ—

ଦବାନଳି ଜଳି      ସହନ-ମନ୍ତ୍ର
ଅଳି ଝଳି ଭୂମି      ସହି ଅକାତର
ସମସ୍ତ ଆସିଲେ      ପକ୍ଷୀ ଉଡ଼ିଯିବ,
ଦୁଃଖ ଏକା ତୁମ୍ଭେ      ପଛେ ପଡ଼ିଥିବ ।



## ଦୁର୍ଭିକ୍ଷ--ଭେରୀ ।

କହେଲା ରେ ! ସୁନାର ସଂସାର ଭାଙ୍ଗିଲା ରେ ॥

ଧାର ଶ୍ରାବଣରେ,      ଚଣ୍ଡାଂଶୁ ତାପରେ
ଜଳଭରା ଧରା ଶୁଖିଲା ରେ ।
ଦେଖିଣ କେଦାର      କରେ ଧୂମୋଦ୍ଗାର
କୃଷୀବଳ ବୁଦ୍ଧି ହଜିଲା ରେ ।
କନା ଚନ୍ଦ୍ରା ସଙ୍ଗେ      ପୁଣି ଦାନା ଚନ୍ଦ୍ରା
ଗଛପନ୍ଦେ ପ୍ରାଣ ବସିଲା ରେ ।
ବୁଣିଥିଲା ଧାନ      ଗୃଷି ସୁଯତନ
ବହନ ଆଉ ନ ପାଇଲା ରେ ।
ମେଘ ଚକ୍ଷୁ ବର୍ଷି      ନ ଦେଖି ଆକାଶେ
ରବ ଆଶା ମନୁଁ ଛାଡ଼ିଲା ରେ ।

ପୌଷମାସେ ଆହା        ଗୃଷୀ ସର୍ବନାଶ
ଅବସ୍ଥାକୁ ଏବେ ଭଜିଲି ରେ ।
କୋଟି କଣ୍ଠେ ଉଠେ        ହାହାକାର ରବେ
ଦୁର୍ଭିକ୍ଷର ଭେରୀ ବାଜିଲା ରେ ।
ନଅଙ୍କରେ ଥରେ        ଶୁଣାଥିଲା ଏହା
ତାହାଠାରୁ ବଳି ଗର୍ଜିଲା ରେ ।
ମାତା ଅନ୍ନପୂର୍ଣ୍ଣା        ଜନ୍ମଭୂମି-ସଖୀ—
ସଙ୍ଗ ଲାଜେ ଦୁଃଖେ ଛାଡ଼ିଲା ରେ ।
ଭୀମ ଡାକ ଶୁଣି        ଯଥା କୁରୁ ମଣି
ସ୍କନ୍ଧଦେଶୁଁ ଶିରୀ ତୁଟିଲା ରେ ।
ଧାନ ମାଣ ଅଣେ,        ସୂତାଖିଅ ପଣେ
ତଣାମୂଲ ମୁଗୁଁ ବଳିଲା ରେ ।
ବାରଙ୍ଗା ବୁଲିଲେ        ମାଣ୍ଡିଆ ନ ମିଳେ
ଦେଶ ଛାରଖାର ହୋଇଲା ରେ ।
ଚଷା ବାପୁଡ଼ାଟି        ହଳ ବଳ ବିକି
ପାଷଣ ଗୃଳରେ ଖୋସିଲା ରେ ।
କଂସା ଲୋଟା ସାର        କପାଳ ଆଦର
ଦୁଃଖେ ଘଡ଼ି ବଢ଼ା ଆସିଲା ରେ ।
ଘର କାହାରକୁ        ସବୁ ଶେଷ ଦେଖି
ନାକେ କାନେ ହାତ ମାଇଲା ରେ ।

ନୋଳି ନାକଚଣା  ବଙ୍କ ଫୁଲଗୁଣା
 ଗୃହିଣୀ ହାତକୁ ଗୁହାଁଳି ରେ ।
ଉତ୍ତର ଚୋଟିଙ୍କ  ଗୋଟି ଖଡୁ ମୁଦ
 ପାଟସୂତା ଖିଏ ବାନ୍ଧିଲା ରେ ।
ସବୁ ସରିଗଲା  ଦେଖି ନିରମାଖୀ
 ପେଟେ ଓଦାକନା ଲଦିଲା ରେ ।
ପେଟ ଛଟପଟ  ସମ୍ଭାଳି ନପାରି
 କିଏ କେଉଁ ବାଟ ପାଞ୍ଚିଲା ରେ ।
ଲଜ୍ଜା ଭୟ ଗ୍ଲାନି  ମହତ୍ତ୍ୱ ନ ଜାଣି
 କର୍ଣ୍ଣେ ଯାହା ଶୁଣା ନଥିଲା ରେ
ସ୍ୱାମୀ ଯାଏ ଛାଡ଼ି  ପତ୍ନୀ ପୁତ୍ର କନ୍ୟା
 ଚଷାର ସଂସାର ସରିଲା ରେ ।
ମାଆ ନିଏ କାଢ଼ି  ପୁଅ ହାତୁଁ ଅନ୍ନ
 ଜନନୀ ମମତା ଛାଡ଼ିଲା ରେ ।
ରାଜ୍ୟ ଛାଡ଼ି କିଏ  ପରିବାର ସଙ୍ଗେ
 ଆସାମକୁ ବାଟ କାଟିଲା ରେ ।
କେତେ ଦିନ ପାଇଁ  ଅବା କିଏ ଜାଣେ
 ଆମ ଦେଶୁଁ ହାଟ ଉଠିଲା ରେ ।
କଟକେ ଚହଟା  ଉପୋଘରଠାରେ
 ସରଦାର କାମ ବଢ଼ିଲା ରେ ।

ଯା ହେବାର ହେଉ          ଧନ୍ୟ ସେ ଆସାମ
ଲକ୍ଷ ଲକ୍ଷ ପ୍ରାଣୀ ପୋଷିଲା ରେ ।
ଯିଏ ଗୃଲଗଲା          ସିଏ ତରିଗଲା
ପେଟକୁ ଦମୁଠା ପାଇଲା ରେ ।
କାହିଁ ଅବା କେହି          ଦୁଃଖ କଷ୍ଟ ସହି
ମାଟିକି କାମୋଡ଼ି ରହିଲା ରେ ।
ତାର ଦୁଃଖ ସିନା          ହେଲା ଅସରନ୍ତି
କବି ବଚନକୁ ବଳିଲା ରେ ।
ଦୁଇଦନେ ଥରେ          ନ ମିଳିଲା ମୁଠେ
ହାଡ଼ରୁ ମାଉଁସ ଝଡ଼ିଲା ରେ ।
ପିଠି ପଛପାଖେ          ପେଟ ଲାଗିଗଲା
ନୟନ କୋଟରେ ପଶିଲା ରେ ।
ଗଣି ହୋଇଯାଏ          ଅସ୍ଥି ଖଣ୍ଡି ଖଣ୍ଡି
ଯୌବନେ ବୃଦ୍ଧତ୍ୱ ଆସିଲା ରେ ।
ପୋଡ଼ା କପାଳକୁ          ନବଟ ନଦା
ବନେ ଫଳ ମୂଳ ନୋହିଲା ରେ ।
ଯାହା ହେଲା ତାହା          ବନୁଁ ଆଣିବାକୁ
ଅଙ୍ଗରୁ ଶକତି ତୁଟିଲା ରେ ।
ଅଶ୍ୱଥ ପତର          ଅଣ କଦଳିଆ
ଶାଳ ଫଳ ଯାହା ମିଳିଲା ରେ ।

ଢୋଲକ ଝଙ୍କାର ସୁକୁମାର ନର
ଛେଳପରି ଆହା ଚରିଲା ରେ ।
ଲହଙ୍ଗା ଗୃକୁର୍ତ୍ତା ଫେକାସିର ଶାଗ
କେତେକ ଜୀବନ ରଖିଲା ରେ ।
ଅନ୍ନଛତ୍ରା ପେଟେ ପଡ଼ି ପୁଣି କାର
ବାତାଜୀର୍ଣ୍ଣେ ପ୍ରାଣ ହରିଲା ରେ ।
କାହିଁ କଏ ଗଛ- ମୂଳେ ବସୁଁ ବସୁଁ
ପ୍ରାଣ-ବିହଙ୍ଗଟି ଉଡ଼ିଲା ରେ ।
ଯେ ଯେତେ ଯାରକେ ଉପାୟ ବାନ୍ଧିଲେ
ସବୁ ସିନା ବ୍ୟର୍ଥ ହୋଇଲା ରେ ।
ଧନିକ ବଣିକ ଦୁଃସ୍ଥ ରକ୍ତ ଶୋଷି
ପେଟକୁ ବଢାଇ ବସିଲା ରେ,
ପାଞ୍ଚଟଙ୍କା ଚଢେଇ ପାଞ୍ଚବୋତ୍ତ ଦେଇ
ସାଉ କରେବାର ବାହୁଲା ରେ ।
ଶାସକେ ତଡ଼ାଗ କୂପ ଖୋଳାଇଲେ
ରାଜପଥେ କାମ ଲାଗିଲା ରେ;
ସ୍ଥାନେ ସ୍ଥାନେ ସେବା- ସମିତି ବସିଲା
ଅନ୍ନଛତ୍ର କେତେ ଖୋଲିଲା ରେ ।
ନ ହେଲା ସମ୍ଭାଳି, ଖରସ୍ରୋତ କଏ
ବାଲିବନ୍ଧେ କେବେ ରୋଧିଲା ରେ ।

ସକଳ ଉପାୟ      ଗଲା ଫୁଟି ଫାଟି
ବିଧାତା ବିଧାନ ଜଣିଲା ରେ ।



## ଆଶା—ଲତା ।

ବାସନ୍ତ ସମୀର      ବହେ ଧୀର ଧୀର,
କମ୍ପା ଲୋ ଲତିକେ !      ଏଡ଼େ ତୁ ଅଧୀର ?
ଉଠୁଛୁ ପଡ଼ୁଛୁ      ହସୁଛୁ କାନ୍ଦୁଛୁ
ଗଗନେ ଅନାଇଁ      ଭୂତଳେ ଚୁମ୍ବୁଛୁ ।
କି ବିଭିନ୍ନଭାବ      ଜାଗି ତୋ ଅନ୍ତରେ
ଆଣିଦିଏ ସୁଖ,      ପୁଣି ଦୁଃଖ ପରେ ?
ବସନ୍ତ ମାଧୁରୀ      ଦେଖି ହସ ହସ
ନିଦାଘ ସୁମର      ପୁଣି କି ବିରସ ?
ମୋ ଆଶା ନବୀନା      ହୋଇଛି ସୁକ୍ଷୀଣୀ
କରି ତୋତେ ତାର      ଜୀବନ ସଙ୍ଗିନୀ ।
ସୁକୁମାରୀ ଧନୀ      ଦିବସ ଶର୍ବରୀ
ଉଠୁଛି ପଡ଼ୁଛି      ସଦା ତୋହସର ।
ଦୁଇ ଭଗ୍ୟେ ସମ      ଲଲ୍ଟେ ଲିଖନ
ତେଣୁ "ଆଶା-ଲତା"      ବଚନ ତୁଳନ ।

# ସୂର୍ଯ୍ୟମୁଖୀ ।

କନକ ବରନେ ଗୃରୁ ସୂର୍ଯ୍ୟମୁଖି !
ତୋ ପର ଧନେ କ ମୁହିଁ ହେବ ସୁଖୀ ।
କାହିଁକ ଲୋ ହାସେ ପୂରିଛି ବଦନ
କାହା ପ୍ରତି ଏଡ଼େ ସ୍ଥିର ତୋ ନୟନ ?
ଦେଖିକ ତପନ ତୋ ଜୀବଜୀବନ
ହେଉଅଛି ମନ ଏଡ଼େ ଛନ ଛନ ?
ମୋହୁଛି ତୋତେ କ ଦେବ ତପନର
ଚିତ୍ତ-ଆକର୍ଷକ ମୋହନ ମନ୍ତ୍ରର ।
ବିନ୍ଦୁ ବିନ୍ଦୁ ପଡ଼େ ପ୍ରେମ-ମକରନ୍ଦ,
କହିଲେ ନ ସରେ ତୋ ହୃଦ ଆନନ୍ଦ ।
ଧନ୍ୟ ସୂର୍ଯ୍ୟମୁଖି ! ଧନ୍ୟ ତୋ ଜୀବନ
ଜୀବଦେଶେ ଭକ୍ତି ତୋର ଅତୁଳନ ।
ତପନ ତୋ ଧ୍ୟାନ ତପନ ଜୀବନ,
ଯେଣେ ଧନକର ତେଣେ ତୋ ବଦନ ।
ତୋର ଏ ଧରମ ଶିଖି କଲେ ଧନେ
ଗୃହିଁ ରହିଥିବ ମୋ ପରାଣ ଧନେ ?
କନକବରନେ ଗୃରୁ ସୂର୍ଯ୍ୟମୁଖି !
ସତେ କଲେ ଧନେ ପ୍ରାଣେ ହେବ ସୁଖୀ ।

# ସ୍ତବ ।

---

ସୁନୀଳ ଗଗନେ ଶଶୀ ଆମୋଦ ତରଙ୍ଗେ
ଖେଳେ ଘନେ ସୁଧା-ଜ୍ୟୋତ୍ସ୍ନା ତାରାଗଣ ସଙ୍ଗେ,
ପ୍ରଭୋ, ରଜନୀରଞ୍ଜନ
ନିରନ୍ତର କରେ ତୋର ମହିମା କୀର୍ତ୍ତନ ।

ବାରୁଣୀ ଆକାଶେ ଧରି ବିଚିତ୍ର ତୂଳିକା
ଅଙ୍କି କେତେ ଚିତ୍ର ଖୋଲି ଶୋଭା ମଞ୍ଜୁଷିକା
ପ୍ରଭୋ, ପଙ୍କଜବାନ୍ଧବ
ପ୍ରକାଶୁଛି ରଙ୍ଗେ ତୋର ଶୋଭାର ବିଭବ ।

ସୁଦୂର ଗଗନେ ବସି ଘନାଘନ କୋଳେ
ହସି ହସି ପ୍ରାଣେଶ୍ୱର ସଙ୍ଗେ ପ୍ରେମଭୋଳେ,
ପ୍ରଭୋ, କନକବସନା
ସୌଦାମିନୀ ଧନ୍ୟା ଧରେ ତୋ ନାମେ ମୂର୍ଚ୍ଛନା ।

ଦିନମଣି ପୂର୍ବଭାଗେ ଶୋହେ ଶଙ୍କରୂପ
ସରଜି ସପତବର୍ଣ୍ଣ ବିଭୂତି-କଳାପ,
ପ୍ରଭୋ, ଇନ୍ଦ୍ର-ଶରାସନ
ପ୍ରକଟଇ ବିଚିତ୍ର କି ତୋହର ସର୍ଜନ ।

ଅକୂଳ ଦିଗନ୍ତବ୍ୟାପୀ ନୀଳ ପାରାବାର
ବିସ୍ତାରି ଉତ୍କଣ୍ଠ କାୟା ପ୍ରଶାନ୍ତ ଉଦାର,
ପ୍ରଭେ, ରବି-ଶଶି-କରେ
ତାଳେ ତାଳେ ନାଚ ତାଳେ ମହିମା ନିକରେ ।
ସ୍ୱଚ୍ଛନୀର ସୁଗଭୀର ସୁଦୂରବାହିନୀ
ସଖୀ ସହଚରୀବୃତା ଲହରୀମାଳିନୀ
ପ୍ରଭେ, ଶଇଳ-ନନ୍ଦିନୀ
ତୋର ପ୍ରେମାଳାପେ ସିନା କଳନିନାଦିନୀ ।
ପାଷାଣବନ୍ଧୁର ଯୋଗ — ନିମଗ୍ନ ଅଚଳ
ପାଦପ ଲତିକାକୁଳେ ଶୁଭ୍ର କଳେବର
ପ୍ରଭେ, ତୁଙ୍ଗ ମହୀଧର
ନୀରବେ ଗାଉଛି 'ତୁମ୍ଭେ ଦୟାର ସାଗର'
ନଭସ୍ପର୍ଶୀ ଗିରିଶିରେ ସମୀର ମଳୟ
ହଲାଇ ନଚାଇ ତରୁ ବଲ୍ଲରୀ-ନିଚୟ,
ପ୍ରଭେ, ନିଜଗତପ୍ରାଣ
ଧରିଅଛି ନଗସଙ୍ଗେ ତା ସଙ୍ଗୀତେ ତାନ ।
ନିକୁଞ୍ଜେ ଗହନବନେ ତରୁ ଅନ୍ତରାଳେ
ଅଥବା କୁସୁମଶୋଭୀ ପାଦପ ଶାଖାରେ
ପ୍ରଭେ, ମୟୂର ମୟୂରୀ
ଦେଖାନ୍ତି ଜଗତେ ତୋର ତୂଳିକା ଚାତୁରୀ ।

ବକୁଳ କଳି ମଣ୍ଡିତ  ରସାଳ କାନନେ
ତୋ ମଧୁ ସଙ୍ଗୀତ ଗାଇ  ସୁଲଳିତ ସ୍ୱନେ,
ପ୍ରଭେ, କୋକିଳ କୋକିଳା
ବିହାର କରନ୍ତି ରଚି  ନାନାରଙ୍ଗେ ଲୀଳା ।
ଢଳ ଢଳ ସୁନିର୍ମଳ  ସରସୀ ସଲିଳେ
କଣ୍ଟକ ମୃଣାଳେ  ନାଚି ମୃଦୁଳ ସମୀରେ,
ପ୍ରଭେ, ଶୋଭାର ସାଗର
ତାମରସ ବନ୍ଦେ ତୋର  ଚରଣ କମଳ ।
ମଲ୍ଲିକା କଳିକା ପୁଣି  ଗୋଲାପ ମଞ୍ଜରୀ
ଫୁଟି ଗୃହଦଗେ ସୃଜ  ସୌରଭ ଲହରୀ,
ପ୍ରଭେ, ତୋର ପବିତ୍ରତା-
ପାରିବାରୁଁ ଢାଳନ୍ତି କି  ଏକ ବିନ୍ଦୁ ସତ୍ତା ।
ଅଭ୍ରେ ସାଗରେ ଭୂଧରେ  ଗହନ କାନ୍ତାରେ
ଯେଣେ ଗୃହେଁ ତେଣେ ଦେଖେ  ନାଚି ତାଳେ ତାଳେ,
ପ୍ରଭେ, ବିଭୂତି ତୋହର
ପ୍ରକାଶନ୍ତି ମୁଦେ ସର୍ବେ  ଦିବସ ଶର୍ବରୀ ।
ମାୟା ମମତାରେ ପଡ଼ି  ଯାଉଛି ଜୀବନ,
କରୁଛି କେବଳ ମୁହିଁ  ପାପ ଉପାର୍ଜନ,
ପ୍ରଭେ, କଳୁଷନାଶନ !
ତୋର ଦୟା ବିନା ନାହିଁ  ଗତି ମୋର ଅନ୍ୟ ।

ଭକ୍ତ ଜୀବନ ମୋ ହୃଦ- ପଙ୍କଜ-ତପନ
ଜଗଦାଦ୍ୟ ଗୁରୁ ନାଥ ପରମ କାରଣ,
ପୂଜେ, ଶ୍ରୀଚରଣେ ଅଳି
ଲଭି ସୁଧାକର ଫୁଟୁ ହୃଦପଦ୍ମ କଳି ।



## ଗୋଲାପ ।

ଆହା ମୋ ଗୋଲାପ ଫୁଲ ଦିଶଇ କେଡ଼େ ମଞ୍ଜୁଳ
ଧୀରେ ଧୀରେ ଦୋଳି ଊଷା ମନ୍ଦ ପବନେ,
ଉଜଳେ ଶିଶିର ମୁକ୍ତା-ଥୋପି ବଦନେ ।
ବାନ୍ଧିଛି କି ତରୁ ଗଭି, ବସିଛି କି ଅଳି ସଭି
ବାଳାରୁଣ କାନ୍ତି ଜିଣି ଫୁଲଟି ଝଳେ
ଆହା କି ସରଗ ଶିଶୁ ଗୋଲାପ ଧରେ ।
ବହଇ ନନ୍ଦନବନ- ପାରିଜାତ ସୁମୋହନ
ସୁରଭି କୁସୁମୁଁ, ଦିଗ ଉଠେ ଚହଟି,
ଆନନ୍ଦେ ନାଚୁଛି ବୃନ୍ତେ ମୋର ଫୁଲଟି ।
ପରାଗ ପାଣ୍ଡୁ-କେଶର ସମୀରଣେ ଥର ଥର
ଏପାଖ ସେପାଖ କେବେ ପଡ଼ୁଛି ଢୁଳି
ବୋଳଛି କୁସୁମ ମୁଖେ ଶୋଭା ମାଧୁରୀ ।

ମଧୁପେ ଗୁଞ୍ଜନ କରି                    କୀର୍ତ୍ତି ତାର ଗୁଣାବଳି
ଧାଆଁନ୍ତି ଗୋଲାପ ପାଶେ ଗୋଟିକି ଗୋଟି,
ମଧୁଲୋଭେ ଚରଣରେ ପଡ଼ନ୍ତି ଲୋଟି ।
ରେ ପ୍ରିୟ ସୁମନ ମୋର                  ଛଣା ପୀୟୁଷରେ ତୋର
ହୃଦୟ ପେଟିକା ପୂର୍ଣ୍ଣ, ତହୁଁ ମାଧୁରୀ
ଦର ଦର ଝରିପଡ଼େ ପ୍ରାଣେ ସବୁରି ।
ତୋପରି ଶୁଭ୍ର ସୁମନେ                 କଣ୍ଟକି ବୃକ୍ଷେ କେସନେ
ରଚିବାକୁ ବିଧାତାର ବଳିଲା ମନ ?
ହେମଲତେ ଶୋହେ ଯିନା ତୋର ଆସନ !
କି ବିଚିଏ ଦେଖ ବିଧି                  କମଳ ଲାବଣ୍ୟ ନିଧି
ବିରଜେ ପଙ୍କିଲ ସରେ ମୃଣାଳ ପରେ
ବାସହୀନ କିଂଶୁକ କି ସୌନ୍ଦର୍ଯ୍ୟ ଧରେ !
ବିଦ୍ଧି ଅଟେ ଅବିବେକି                 ବୁଦ୍ଧି ନାହିଁ ତା ତିଳେକ
ଦେଖି ତା ରଚନା-ଖିନ୍ତ ହୁଏ କଳ୍ପନା;
ବିଧାତା ବିଧାନେ କମ୍ପା ଏ ବିଡ଼ମ୍ବନା ?
ଅବିବେକ ନୁହେ ବିଧି                  ଗୋପନେ ସାଧେ ସେ ସିଦ୍ଧି
ବୁଝେ ତା ସର୍ଜନା ବିଧି ମେଲି ନୟନ
ଦେଖିଲେ ମାନବ ପିନ୍ଧି ଜ୍ଞାନ ଅଞ୍ଜନ ।
ବିକଳାଙ୍ଗ କୁଶ୍ରୀର                    ହେଲେ କି ହୋଇବ ନର
ଗୁଣଯୋଗେ ଶୋଭାପାଏ ଜନ ସମାଜେ
ତରୁ ମୋର ଫୁଲଲାଗି ଯେସନେ ବିରାଜେ ।

ଗୁଣହୀନ ଯେ ହୃଦୟ          ଅଟେ ସେ ନୀରସମୟ
ମୋହନ ମୂରତି ତାକୁ ନପାଏ ଶୋଭା
ପଲାଶ କୁସୁମେ କାର ମାନସ ଲୋଭା ?



## ସୁଖସ୍ୱପ୍ନ ।

ଖେଳୁଥିଲି ଯବେ          ମାତାକୋଳେ,
ଦେଖୁଥିଲି ସୁଖ-          ସ୍ୱପ୍ନ ଭୋଳେ-
ଯାପିବି ମୁଁ ସୁଖେ          ମୋ ଜୀବନ
ଫୁଲେ ପୂଜି ମାତା          ଶ୍ରୀ ଚରଣ ।
ଭକତିରେ ଯୋଡ଼ି          ବେନିପାଣି
ଛିଡ଼ା ହୋଇଥିବି          ଆଜ୍ଞା ମାନି ।
ସ୍ୱପନେ କି ଅବା          ଜାଗରଣେ
ଦେବିନାହିଁ ଦୁଃଖ          ତାର ମନେ ।
ଜନନୀ ସନ୍ତୁଷ୍ଟି-          ସାଧନରେ
ଢାଳିବି ଜୀବନ          ଜଗତରେ ।
ହୃଦ ଖଟୁଲିରେ          ମୋର ବସି
ରହିଥିବ ମୋତେ          ହସି ହସି ।

ପୁରୁଣା ସେ କୋଳ,   ଆଜ ନୂଆ
ଅଙ୍କ ପୁଣି ମୋର   ଆଗେ ଥୁଆ ।
ନୂଆ ଦେଖି ଭୁଲେ   ପୁରୁଣାକୁ,
ତୃଷ୍ଣା ମେଲ୍ହାଏ   କରୁଣାକୁ ।
ଭାଙ୍ଗିଲା ସ୍ୱପନ,   ସବୁ ଗଲା,
ଜନନୀ ମରମେ   ପୋଡ଼ିଗଲା ।
ତଳେ ଦୋଷ ଦେଖି   ବାକ୍ୟ ବାଣ
ହାଣେ ମୁଁ, କାନ୍ଦଇ   ତାର ପ୍ରାଣ ।
ବଞ୍ଚିଛି ମୁଁ ଯେଉଁ   ନୂଆ କୋଳେ
ସୁଖ-ସ୍ୱପ୍ନ ଦେଖେଁ   ତହିଁ ଭୋଳେ ।



## ମା ।

କାହିଁକି ମା ଲୋ   ବିଷର୍ଣ୍ଣ ବଦନ
ଚାହୁଁଛୁ କମାଇ   ଲୋତକ ନୟନ ?
ଦେଖେଁ କମା ଆଜ   ଜଳନ୍ତା ଅନଳ
ଜାଳୁଛି ତୋ ହୃଦ-   କମଳ-କେଶର ।
ସହୁଅଛୁ କେତେ   ଦୁଃଖ ଚରଦନ,
ଦିନେ ନ ଦେଖେଁ ମୁଁ   ତୋ ମୁଖ ମଳିନ ।

ବ୍ରହ୍ମଚର୍ଯ୍ୟ ବ୍ରତ ନିୟମରେ ପାଳି
ପୁତ୍ର କନ୍ୟା ସ୍ନେହେ ମନ ପ୍ରାଣ ଢାଳି
ମୁଦେ ଥିଲୁ ମଣି ଘୋର ଦୁଃଖେ ସୁଖ ।
ଅଙ୍କିତ ବିଷାଦ ଘୋଟିଛି ତୋ ମୁଖ,
ଦେଖୁନାହିଁ କମ୍ପା ସେହି ମଧୁରିମା
ଯା ଦେଖି ମାଆଲୋ ନ ସରେ ଗରିମା ।
ଦୂରୁ ଦେଖି ମୋତେ ମୁଖ ହସ ହସ,
ନିକଟେ ତ ଠିଆ ତୁ କମ୍ପା ବିରସ ?
"ଦେଖି ନାହୁଁ ଧନେ ବାଳୁତ କୁମର
ମାତା ହୃଦପଟ ଖୋଲି ସ୍ତର ସ୍ତର ।"
ଜାଣିବୁକି ତହିଁ କେତେ ଦୁଃଖ ଛବି
ରହିଛି ଚିତ୍ରିତ, ହୃଦ ଯାଏ ଦବି ।
ଭିଷ୍ୟା ସୁଖ ଭାବି ସବୁ ଥିଲି ସହି
ଦୀକ୍ଷା ନେଇଥିଲି ଗୁରୁ କରି ମନ୍ତ୍ର ।
ସରଳ ଭାବନା ଆସିଲା ଯାତନା
ସୁଖସ୍ମୃତି ମୋର ହଜାଏ ଚେତନା ।
ପୋଷିଥିଲି ଆଶା ହୃଦୟ ଭିତର
ପୁଅ ବହୂ ସଙ୍ଗେ ଖେଳି ଧୂଳିଘର
ସୁଖେ କାଟିଦେବି ସମୟ ଚରମ;
ଘଟିଲା ଏବେ ତ ବିପରୀତ କର୍ମ ।

ଦେଖେ ନାହିଁ ଯବେ ପୁଅକୁ ନରମ,
ଦେଖିଲେ ସେ ମୋତେ ତା ହୃଦ ଗରମ ।
ସ୍ତମ୍ଭନ ମୋହନ- ମନ୍ତ୍ର ଉଚ୍ଚାଟନ,
ପିଲାପନ କଥା ଅଛି କି ସ୍ମରଣ ?
ଶିକାରୀ ସଙ୍କେତେ ଦେଖିଲେ ଶିକାର
ମାଡ଼ି ବସେ ଶ୍ୱାନ ଧାଇଁ ଧାତକାର ।
ଫଳ ଅଛି ତାହା ମୋର ଭାଗ୍ୟେ ବହୁ !
ଯେଣେ ଗୃହେଁ ଶ୍ୱାନ ଧରଛି ମୋ ପଛ ।
କାନ୍ଦେ ତେଣୁ , ଶିରେ ବରଷୁ ପୀୟୂଷ,
ମୁଁ ମରେ ପଛକେ ହୁଅ ଚିରାୟୁଷ ।

## ଶୁକପକ୍ଷୀ ।

କାହିଁକି ରେ ଶୁକ ! କନକ ପିଞ୍ଜରେ
ବସିଅଛୁ ମନ ମାରି ?
ନିରୀହ ସରଳ ନିର୍ଦ୍ଦୋଷୀ ପକ୍ଷୀ ତୁ
ହେଲା କିଏ ତୋ ଭଗାର ?
ହିମେ ଉଷା ମୁଖେ ନୀହାର ସୁଗ୍ରୁ
ଦଶେ ନବ ତୃଣପରେ;

ନିନ୍ଦ ତାର କାନ୍ତ ଅଶ୍ରୁ ବିନ୍ଦୁ ବିନ୍ଦୁ
ନୟନୁଁ ତୋ ସଦା ଝରେ ।
ପ୍ରଫୁଲ୍ଲିତା ଅଳି ଜୀବନ-ସଙ୍ଗିନୀ
ଛାଡ଼ିଗଲା ସେ କି କୀର ?
ନୀରବ ଭାଷାରେ ବିଷାଦ-ସଙ୍ଗୀତ
ଗାଉଛୁ ହୋଇ ଅଧୀର ।
କେଉଁ ଚୋର ତୋର ହୃଦୟ-କନ୍ଦରେ
ନିହିତ ଶାନ୍ତି-ରତନ
ନେଇ ଗଲାବେଳେ ନିର୍ଦ୍ଦୟ ମାନସେ
ଅଜାଡ଼ି ଘୋର କଷଣ ।
ପଡ଼େ ମନେ ନଦୀ- ସୁନିର୍ମଳ ଜଳ
କିବା ବନ ମଧୁଫଳ ?
କାହିଁକି ଶୋଭନା ଲଭିବୁ ସୁସ୍ୱାଦୁ
ଫଳ, ଦିବ୍ୟ ଗଙ୍ଗାଜଳ !
ଜାଗି କି କୋମଳ- ପ୍ରାଣେ ପିତା ମାତା
ଭାଇ ବନ୍ଧୁଜନ ସ୍ମୃତି
ମରମେ ମରମେ ସ୍ତରେ ସ୍ତରେ ବହି
ଭସାଇ ନିଏ ତୋ ଧୃତି ?
କହ କହ ପକ୍ଷି ! କପଟ ନ ରଖି
ତୋହର ମନୋବେଦନା,

ପ୍ରକାଶିଲେ ଲଘୁ  ହୁଏ ଦୁଃଖ ଭାର
ନାହିଁ କି ତୋର ଧାରଣା ?
ଜାଣିଲଣି ଶୁକ,  ଯେଉଁ ଆଠ ତୋର
. କାଟେ ହୃଦ-ପୁଷ୍ପଦଳ,
ଇଙ୍ଗିତରୁ ଫୁଟି  ଉଠେ ବାହାରକୁ
ଭାବ ଗୁପ୍ତ ଅନ୍ତରର ।
ସ୍ୱାଧୀନତା ବିନା  ଜଗତରେ ସାର
ନାହିଁ କିଛି ଅନ୍ୟ ଧନ,
ହରାଇ ସେ ବିତ୍ତ  ପ୍ରିୟ ପକ୍ଷି ମୋର,
କରୁଣେ କରୁ କ୍ରନ୍ଦନ ।
ସୁନୀଳ ଗଗନେ  ଅନିଲ ଲହରୀ-
ଦୋଳେ ଦୋଳ ମନ୍ଦେ ମନ୍ଦେ
ବଂଶୀ ସ୍ୱର-ଗୀତ  ସତେ କି ଆଉ ତୁ
ଖେଳିବୁ ମନ-ଆନନ୍ଦେ ?
କଉତୁକେ ଦେଇ  ଖଣ୍ଡି ଉଡ଼ା ଆଉ
ଡାଳରୁ ଡାଳେ ବସିବୁ ?
ପ୍ରେମ-ଆଳାପେ କି  ପ୍ରଣୟିନୀ ସଙ୍ଗେ
ବିଜନେ ଗୃହେ ଭଷିବୁ ?
ସାଙ୍ଗ ସୁଖ ଜନ-  ସ୍ନେହ ସମ୍ଭାଷଣ
ଲଭିବୁ ଅବା ତୁ କାହିଁ ?

ନିଶାର ସ୍ୱପନ ହେଲା ଏ ତୋପକ୍ଷେ
ଲୋଡ଼ିଲେ ମିଳିବ ନାହିଁ ।
ରତନ-ଖଚିତ କନକ-ଶୃଙ୍ଖଳ-
ବଳୟ ପିନ୍ଧି କି କେହି
ମଣଇ ତାହାକୁ ଅଙ୍ଗ ଆଭରଣ ?
ଭୁଜଙ୍ଗ-ବନ୍ଧନ ସେହି ।
କ୍ରୀତଦାସ ଶିର ମଣ୍ଡିଲେ କିରୀଟେ
ଲଭେ କି ସେ-ସୁଖଶାନ୍ତି ?
ବନ୍ଦୀ ହୋଇ କେହି ରହିଲେ ପ୍ରାସାଦେ
ଘୁଞ୍ଚେ କି ତାର ଅଶାନ୍ତି ?
ଯେଉଁ ବୈର ତୋର ହରିଛି ହୃଦୟ-
ନିଧି ଧିକ ତାକୁ ଶୁକ,
ଶାନ୍ତି ସୁଖେ ବସ, ଭାବିଲେ କି ହେବ
ବଢ଼ିବ ଦ୍ୱିଗୁଣେ ଦୁଃଖ ।
ହେଲେ ସେ ମନୁଷ୍ୟ ଯାଏ ଆସେ କିସ
ନ ବୁଝେ ଯେ ପର-ମନ
ନ ରସେ ଆକାରେ ପିଶାଚ ହୃଦରେ
ପଶୁଠାରୁ ସେ ଅଧମ ।



# ଉଦ୍‌ବୋଧନ ।

ତେଜ ଶଯ୍ୟା ଉଠ — ଉତ୍କଳବାସି !
ଉଙ୍କିଲେ ପାହୁବ — ନାହିଁକି ନିଶି,
ଉତ୍କଳର ପ୍ରାଚୀ — ଗଗନେ ରବି
ସଙ୍ଗେ ଘେନି ଗୁରୁ — ଲୋହିତ ଛବି
ଆଉ କି ଉଇଁବେ ନାହିଁ ?
କମଳା-ବିଳାସ — ଉତ୍କଳସରେ କି
କମଳ-କଳି ଫୁଟାଇ ?
ଦେଖ ଦେଖି ଥରେ — ମେଲି ନୟନ
ତୂଳୀ ତଳପରେ — କରି ଶୟନ
ଲଭିଣ ଉତ୍ସାହ- — ଭାନୁ କିରଣ
ଚଉପାଶେ ଧୀରେ — ଧୀରେ କେସନ
ନାଚେ ଆଶା ପଙ୍କଜିନୀ
ହୃଦୟ-ସରସେ — ଚଞ୍ଚଳ ସଲିଳେ
ଚଳ ଚଳ ସୁହାସିନୀ ।
ଜାଗ ଜାଗ ଭାଇ — ଚଞ୍ଚଳ ଜାଗ
ଭୁଟିତ ଆଳସ୍ୟ — କର ହେ ତ୍ୟାଗ
ସ୍ବପନ-ବିଭ୍ରମ — ମୁଖ ପଖାଳ
କର୍ତ୍ତବ୍ୟ-ସାଧନ — କର ସଖାଳ

ଦେଇଅଛି ତାର ମନରେ ପରଶ  
ଜଳନ୍ତା ଅନଳେ ଏହି କି ବତାସ ?  
ଦୁଃଖିନୀ ସେ ତାର ଶୁଭ କରମରେ  
ନାହିଁ ସ୍ଥାନ ପୋଡ଼ା ହିନ୍ଦୁ ସମାଜରେ ।  
ପୋଡ଼ୁ ସେ ଧରମ ପୋଡ଼ୁ ସେ ସମାଜ  
ନାହିଁ ଯହିଁ ହିତାହିତ ଅବା ଲାଜ ।  
ବିପନ୍ନିକ କେହି ବୟସେ ଅଶୀତି  
ବିଭା କରେ କଷ୍ଟ- ତରୁଣୀ ଯୁବତୀ,  
ନୁହେ ଏ କଳଙ୍କ ନୁହେ ଦୋଷାବହ,  
କଳଙ୍କ ବାଳିକା- ବିଧବା ବିବାହ  
ଯେ ସମାଜେ ଶାସ୍ତ୍ରେ ଏହି ଅବିଚାର  
ତାକୁ ସବିନୟେ ଦୂରୁଁ ମୋ ଜୁହାର ।  
ଯେ ସମାଜ ଚଳେ ମାନି ଏ ଶାସନ  
ରସାତଳେ ପଡ଼ି ଯାଉ ସେ ବହ୍ନନ ।  
ହତଭାଗିନୀ ତୁ ନ ହୁଅ କାତର  
ବିଫଳ ନୋହିବ ତୋ ଲୋତକଧାର ।  
ଲୋତକଧାର ତୋ ନାକ-ମନ୍ଦାକିନୀ  
ବୋହି ପଡ଼ିବ ଭରତ ମେଦିନୀ,  
ସମାଜ-ବକ୍ଷରୁ ସକଳ ଆବିଳ  
ଧୋଇନେବ ପୁଣି ପବିତ୍ର ସଲିଳ

ସରସେ ଫୁଟିବ ଶୋଭନ ସାରସ,
ଉଠିବ ମହକ ସୁବାସ ସରସ ।



## ସନ୍ଧ୍ୟା ।

ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ଆରତି ବାଜିଲା,
ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ଶଙ୍ଖ ଗରଜିଲା ।
ଗୋପାଳବାଳକ ଗାଏ ପ୍ରଦୋଷ ଗୀତିକା
ମୁରଲୀ ବଜାନ୍ତି ସଙ୍ଗୀ ବାଳକ ବାଳିକା ।
ଚରାଣ୍ଡାରୁଁ ଫେରିଲେଣି ବିହଙ୍ଗପଙ୍କତି
ପ୍ରଦୋଷ ଆଗମ ଜାଣିଛି ବାନ୍ଧିବେ ବସତି ।
ପ୍ରୋଷିତ ବାନ୍ଧବ ବାଳା ମନ ଛନ ଛନ
ସନ୍ଧିଯୋଗେ ଦେଖି ଘନ- ଯାମିନୀ ମିଳନ ।
ବୈଧବ୍ୟବିଧୁରା ସଖୀ ଗଣିଲା ପ୍ରମାଦ
ନିଦାରୁଣ ବିଧି ଯେଣୁ ସାଧିଲା ବିବାଦ ।
ସନ୍ଧ୍ୟାଦୀପ ଜାଳି କେହି ପଲ୍ଲିନିବାସିନୀ
ତୁଳସୀ ଚଉରା ପାଶେ କରଇ ଦଣ୍ଡିନୀ ।
ଧୂଳିଆ ବାବାଜି ତାର ଦରିଦ୍ର ଫଙ୍ଖାଳ
ଗାଉଛି ସନ୍ଧ୍ୟାବନ୍ଦନା ଦେଇ କରତାଳି ।

ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ଆରତି ବାଜିଲା,
ବାରବିଳାସିନୀ ବେଶ- ଭୂଷଣ ସାଜିଲା ।
ବାହାର ପଡ଼ିଲା ପଥେ ଧନିକ ଲମ୍ପଟ
ଚହଟ ଚିକ୍କଣ ଯୁବା, ଚଳନ ଚହଟ ।
ସନ୍ଧ୍ୟା ହେଲା ସନ୍ଧ୍ୟା ହେଲା ଶଙ୍ଖ ଗରଜିଲା,
ନିଶା-ବିମୋହିତ ନର ନିଦ ନ ଭଜିଲା ॥



## ମାଗୁଣି ।

ଗୃହେଁ ନା ହେ ପ୍ରଭୋ; ଅମୂଲ୍ୟ ରତନ
ଗୃହେଁ ନା ମୁଁ ମଣି କାଞ୍ଚନ,
ଦରକାର ନାହିଁ ରାଜସିଂହାସନେ
ସଦା ଦରିଦ୍ର ମୋ ଜୀବନ,
ଦରିଦ୍ରତା ହେଉ ଜୀବନସଙ୍ଗିନୀ
ହୁଏ ପଛେ ଚିର ପଥର ଭିଖାରୀ
ଶ୍ରୀବିନୋଦପଦେ ଏତିକି ମାଗୁଣି
ପାଇବି ବାଞ୍ଛିତ ରତନ ।
ଲୋଡୁନାହିଁ ମୁହିଁ କପଟ ମନ୍ତ୍ର
ଲୋଡୁନାହିଁ ମୁହିଁ ଛଳନା,

ଖାଜୁନାହିଁ ମାନ ଅଭିମାନ ଅବା

ଜଗତେ ସୁଖ୍ୟାତି ରଚନା

ସଜାସଜ କଥା କହୁ ନା ରସନା

କେବେହେଁ ଦୁଶ୍ଚିନ୍ତା ନ ଜାଣୁ କାମନା,

ାଗୁଛି ବାଳକ- ସରଳ- ଅନ୍ତର

ଆଉ କିଛି ମୋତେ ଦିଅ ନା ।

---

ପୋଡୁ ପୋଡ଼ୁ ପୋଡ଼ୁ ଏ ହୃଦୟ ॥

ନିଦାଘେ ଗହନ ବନ ଶୁଷ୍କ ତୃଣ ସମାଚ୍ଛନ୍ନ

ମଧ୍ୟାହ୍ନରେ ଜଳି ଉଠେ ଯେହ୍ନେ ଧୂମମୟ ।

କାଳ ବୋଲି ଯାଉ ବସି ଯେହ୍ନେ ହ୍ରାସକଷ ମସି

କୃପାଚିହ୍ନ ଏତ ତୋର ପ୍ରଭୁ କୃପାମୟ !

ଶାନ୍ତିବାରି ନ ଲଭିଉ ଜଳୁ ହୃଦ ଦାଉ ଦାଉ

ରହୁ ଭସ୍ମ-ଅବଶେଷେ ଭଜୁ ଏ ବଳୟ ।



## ପଥିକ ।

ଆରବର ବାଲୁକା ପ୍ରାନ୍ତରେ
ଗମଇ ପଥିକ ରଙ୍ଗେ   ବନ୍ଧୁ ପରିଜନ ସଙ୍ଗେ
ଯାନେ ବସି, ନ ଜାଣଇ ଆତପ ପ୍ରଖର;
କିନ୍ତୁ କେଜାଣି କାହିଁକି ତାତଇ ଅନ୍ତର ।
ଭୋଜ୍ୟ ଦ୍ରବ୍ୟ ଧନ ଅଗଣନ
ଶକଟେ ଶକଟେ ପୂର୍ଣ୍ଣ   ତିଳେମାତ୍ର ନାହିଁ କ୍ଷୁଣ୍ଣ
ତଥାପି ପଥିକ ମନ ବଡ଼ ଅପ୍ରସନ୍ନ
ଧନମଣି ଖରକରେ ସୁମନ ଯେସନ ।
ରେ ପଥିକ ହୁଅନା ଅସ୍ଥିର
ଚାହାଁ ଚାହାଁ ଥରେ ଫେର   ଜଳାସ୍ତୁ ନୟନ ମେଲ
ଏ ସଂସାର ମରୁଭୂମେ କେ କେତେ ଅଧୀର
ପଥିକେ ନ ଲଭି ସୁଖ ସୁଶାନ୍ତି-ସଲିଳ ।
ଚାଲ ଚାଲ ହୃଦେ ଧୈର୍ଯ୍ୟ ଧର
ଗଲେ ଆଉ କିଛିଦୂର   ହେବ ତୋ ପିପାସା ଦୂର
ଜଳ ବିନା କିଛି ଲୋଡ଼ା ନାହିଁରେ ତୋହର
ମରୁରେ ଯା' ସଙ୍ଗେ ଆଉ କିଏ ହେବ ସର ?

ସମାପ୍ତ ।

Printed by Nityananad Sahoo A. Press Cutt